**କରୁଣା ଓ ବିଦ୍ରୋହର ଜୀବନ୍ତ ପ୍ରତୀକ:ସୁରସିଂହ ପଟ୍ଟନାୟକ**
(ସ୍ମୃତି ସଂକଳନ)

ପ୍ରକାଶକ: ସୁରସିଂହ ପଟ୍ଟନାୟକ ସ୍ମାରକୀ କମିଟି, ଭୁବନେଶ୍ୱର
ଅକ୍ଷରସଜ୍ଜା: ଉର୍ମିଳା ଆଚାର୍ଯ୍ୟ
ଲେ-ଆଉଟ୍ ଡ଼ିଜାଇନ୍ : ପ୍ରମୋଦ ସାହୁ
ମୁଦ୍ରଣ: ଶିକ୍ଷା ପ୍ରକାଶନୀ, ଭୁବନେଶ୍ୱର

ପ୍ରଥମ ପ୍ରକାଶନ- ଏପ୍ରିଲ ୪,୨୦୧୨
(ସୁରସିଂହ ପଟ୍ଟନାୟକ ପ୍ରଥମ ଶ୍ରାଦ୍ଧବାର୍ଷିକୀ)

ମୂଲ୍ୟ: ୭୫/-(ପଞ୍ଚସ୍ତରୀ ଟଙ୍କା ମାତ୍ର)

**KARUNA O BIDROHORA JIBANTA PRATEEKA: SURASINHA PATNAIKA** ( A MEMOIR)
Publisher: Surasinha Patnaik Smaraki Committee,Bhubaneswar
Type Setting : Urmila Acharya
Layout Design : Pramod Sahoo
Printed At : Sikha Prakasani, Bhubaneswar
1st Print: April4, 2012( 1st death Anniversary of Surasinha Patnaik)
Rs. 75/- ( Seventy Five only)

# ହେ ପ୍ରାଜ୍ଞ ପୁରୁଷ



ଆବିର୍ଭାବ: ୨୬.୦୨.୧୯୩୨

ତିରୋଧାନ: ୦୪.୦୪.୨୦୧୧

# କରୁଣା ଓ ବିଦ୍ରୋହର ଜୀବନ୍ତ ପ୍ରତୀକ

ପ୍ରତିଟି ବାକ୍ୟର ଆରମ୍ଭ ଓ ଶେଷ ହୁଏ ଚମତ୍କାର ହସରେ । ସେ ହସ ମୃଦୁ ନୁହେଁ ବରଂ ମନଖୋଲା । ସତେଯେମିତି ହସ ହେଉଛି ଜୀବନର ଏକ ଅଂଶ । ହସ ହେଉଛି ସାଧନା ଓ ତପସ୍ୟା । ଧ୍ୟାନୀ ବୁଦ୍ଧଙ୍କ ପରି ଗମ୍ଭୀର ଓ ଉଦାର ଭାବରେ ସେ ହସନ୍ତି ନାହିଁ । ତାଙ୍କ ହସ ଯେମିତି ସାଧୁମାନଙ୍କର ସର୍ବବ୍ୟାପୀ ଓ ସମସ୍ତଙ୍କୁ ଖୁସି କଲାପରି ହସ । ତାଙ୍କଆଗରେ ଯିଏ ଥରେ ବି ଠିଆ ହୋଇଛି, ସେ ଜାଣେ ସାମ୍ନାରେ ଠିଆ ହୋଇଥିବା ଲୋକଟି କେତେ ଅସାଧାରଣ । ନିତାନ୍ତ ସାଧାରଣ ଦିଶୁଥିବା ଏହି ଲୋକଟି ବହୁ ଗଭୀରର ମାଛ । ଏକାସାଙ୍ଗରେ ତାଙ୍କର ସନ୍ତରଣ ଗଭୀରର ଗଭୀରତାକୁ ଓ ତାଙ୍କର ଉଡ଼ାଣ ଆକାଶୁ ପ୍ରଜ୍ଞାପାରମିତାର ମହାଶୂନ୍ୟତାକୁ । ତାଙ୍କର ପରିଚୟ ବହୁବିଧ । ଓଡ଼ିଆ ଜାତୀୟତାର ସେ ମୂର୍ତ୍ତିମନ୍ତ ପ୍ରତୀକ । ଜଣେ ଜୀବନ୍ତ ଓ ହସନ୍ତ ବୁଦ୍ଧ । ଜ୍ଞାନଚର୍ଯ୍ୟା ଓ ଗବେଷଣାରେ ସରିଯାଇଛି ଜୀବନ । ଦଳିତ ଓ ଶୋଷିତଙ୍କ ଲାଗି ତାଙ୍କ ଅନ୍ତରରେ ଯେତିକି କରୁଣା, ସେମାନଙ୍କୁ ଦଳିତ କରି ରଖିଥିବା ଓ ଶୋଷଣ କରୁଥିବା ବ୍ୟବସ୍ଥା ବିରୋଧରେ ସେତିକି ବିଦ୍ରୋହ । ସ୍ପଷ୍ଟ ଭାବରେ କହିଲେ, କରୁଣା ଓ ବିଦ୍ରୋହର ସେ ଏକ ଜୀବନ୍ତ ପ୍ରତୀକ । ଆଜି ସେ ଆମ ପାଖରେ ନାହାନ୍ତି । ନାହାନ୍ତି ବୋଲି କହିଲେ ଭୁଲ୍ ହେବ । ସେ ହୁଏତ ଏ ପୃଥିବୀରୁ ଆଉ କେଉଁ ପୃଥିବୀକୁ ଯାଇଛନ୍ତି । ଏ ପୃଥିବୀରେ ସେ ଥିଲେ, ଅଛନ୍ତି ଓ ରହିବେ । ତାଙ୍କୁ ଇତିହାସରେ କିଏ କେଉଁଠି ଜାଗା ଦେବ, ତା' ଭିନ୍ନ କଥା । ଇତିହାସରେ ଜାଗା ଟିକେ ପାଇବା ପାଇଁ ସେ କେବେ ଚାହିଁ ନଥିଲେ । ଜଣେ ସାଧାରଣ କର୍ମୀ ଭାବରେ ତାଙ୍କର ଜୀବନଯାତ୍ରାକୁ ଯିଏ ଦେଖିଛି, ସିଏ ଜାଣେ ତାଙ୍କ ଆଗରେ ଇତିହାସ କେତେ ତୁଚ୍ଛ । ହଁ ଏଠାରେ ସୁରସିଂହ ପଟ୍ଟନାୟକଙ୍କ କଥା ହିଁ କୁହାଯାଉଛି । ତାଙ୍କର ଶହ ଶହ ସଂଖ୍ୟାରେ ବହି ନାହିଁ । ତାଙ୍କୁ କୌଣସି ପୁରସ୍କାର, ସମ୍ମାନ, ଉପାୟନ ବା ପ୍ରମାଣପତ୍ର ମିଳିନାହିଁ । ନିଜ ମର୍ଜିର ମାଲିକ ସେ । ନିଜ ଜ୍ଞାନ ଓ ଗବେଷଣାର ନିଷ୍ପାପର କର୍ମୀ । ତାଙ୍କର ମୃତ୍ୟୁକୁ ଆମେ ଗୋଟେ ଅଧ୍ୟାୟର ଶେଷ ବୋଲି ମଧ୍ୟ କହିପାରିବା ନାହିଁ । ସେ ଅନନ୍ତ ଆରମ୍ଭର ଏକ ମହାବିନ୍ଦୁ ।

ସୁରସିଂହ ପଟ୍ଟନାୟକ ସାଧାରଣ କଥିତ ଭାଷା କିମ୍ବା ଆଦିବାସୀଙ୍କ କଥିତ ଭାଷାକୁ ନେଇ ପ୍ରବନ୍ଧ ଯେପରି ଲେଖୁଥିଲେ, ତାହା ବିରଳ । ଏପରି ବିଭିନ୍ନ ଭାଷାର ସମ୍ମିଶ୍ରଣରେ ପ୍ରବନ୍ଧ ଲେଖାଯାଇପାରେ, ସେ ପ୍ରକାର କଳ୍ପନା ଆମର ପଣ୍ଡିତ ପ୍ରାବନ୍ଧିକମାନେ କରିପାରିବେ ନାହିଁ । ସୁରସିଂହ ପଟ୍ଟନାୟକଙ୍କ ଗଦ୍ୟର ଠାଣି ହେଉଛି ସେଇଆ । ଏକାସାଙ୍ଗରେ ଦେଶୀ ଓ ମାର୍ଗୀ ଶବ୍ଦକୁ ଯୋଖି ପାରିବାର ଚମତ୍କାର କଳା କୌଶଳ ସେ ଜାଣିଥିଲେ । ବେଳେବେଳେ ଲାଗେ ତାଙ୍କ ଗଦ୍ୟଶୈଳୀଟି ହେଉଛି ଗୋପୀନାଥ ମହାନ୍ତି ଓ ସୁରେନ୍ଦ୍ର ମହାନ୍ତିଙ୍କର ଏକ ଅପୂର୍ବ ମିଶ୍ରଣ । ସମ୍ଭ୍ରାନ୍ତ ଶବ୍ଦ ଭିତରେ-ନିଖୁଣଭାବେ ଯୋଡ଼ା ହୋଇଥିବ କୁଇ ବା ପରଜା ଶବ୍ଦଟିଏ । ସେମିତି ତାଙ୍କର ରଚନାର ଦିଗ ମଧ୍ୟ ଅଭୁତ ଭାବେ ବ୍ୟାପକ । କେତେ କେତେ ଘଟଣାକୁ ନେଇ ସେ ଲେଖିଛନ୍ତି । ମଧୁସୂଦନ ଦାସ ଥିଲେ ତାଙ୍କ ରକ୍ତର ଚାଳିକାଶକ୍ତି । ସତକଥା କହିବାକୁ ଗଲେ ସୁରେନ୍ଦ୍ର ମହାନ୍ତିଙ୍କ





ପରେ ମଧୁବାବୁଙ୍କ ଜୀବନ ଓ କର୍ମକୁ ନେଇ ସବୁଠୁ ନିଷ୍ଠାପର ଭାବରେ ଅଧିକ କାମ କରିଛନ୍ତି ସୁରସିଂହ ପଟ୍ଟନାୟକ । ତାଙ୍କର ଶେଷବହିର ଶୀର୍ଷକ ଥିଲା 'ଆମ ମଧୁସୂଦନ' । ମଧୁବାବୁଙ୍କ ବ୍ୟକ୍ତିତ୍ୱକୁ ଆକଳନ କଲାବେଳେ ତାଙ୍କ ପ୍ରାଣରେ ସଞ୍ଚାରିତ ହେଉଥିଲା ଜାତୀୟତାର ଏକ ମହାଭାବ । ଓଡ଼ିଆ ଜାତିର ନବନିର୍ମାତା ମଧୁବାବୁଙ୍କ କଥା କହିବାବେଳେ ସୁରସିଂହ ପଟ୍ଟନାୟକଙ୍କର ତନ୍ମୟତା ଲକ୍ଷ୍ୟ କରିବାର କଥା । ଏମିତି ତ ସେ ଯାହା କହନ୍ତି, ତନ୍ମୟ ହୋଇ କହନ୍ତି । ପ୍ରତି ବାକ୍ୟରେ ଭରି ରହିଥାଏ ନିମଜ୍ଜନ । ଭାବ ଓ ଭାଷାରେ ବୁଡ଼ି ରହିଥିବା ବ୍ୟକ୍ତିତ୍ୱ ସେ । ଆଖିବୁଜି ନିଜ ବକ୍ତବ୍ୟକୁ ସେ ରଖନ୍ତି । ଏପରିକି ମୁହାଁମୁହିଁ କଥା ହେଲାବେଳେ ଅନେକ ସମୟରେ ତାଙ୍କ ଆଖି ବନ୍ଦଥାଏ । ଆତ୍ମାର ପ୍ରଶାନ୍ତି ଓ ଅନ୍ୱେଷାର ଗଭୀର ଦୀପ୍ତି ତାଙ୍କ ମୁହଁରେ ଖେଳୁଥାଏ । ଯେ କେହି ସୁରସିଂହ ପଟ୍ଟନାୟକଙ୍କୁ ଦେଖିବ, ସେ ଭାବିବ ମଣିଷ ଖୁସି ରହିବା ରହସ୍ୟଟି କ'ଣ ? ସୁରସିଂହ ପଟ୍ଟନାୟକ ସବୁବେଳେ ଆନନ୍ଦରେ ଥାଆନ୍ତି । ଏହି ଆନନ୍ଦର ଭାବଟି ସେ ଶିଖିଥିଲେ ବୁଦ୍ଧଙ୍କ ପାଖରୁ । ସେ ନିଜେ ଥିଲେ ଜଣେ ବୌଦ୍ଧ, ବିପଶ୍ୟନା ସାଧକ । ଓଡ଼ିଆ ଜାତୀୟତାର କଥା କହୁଥିବା ବ୍ୟକ୍ତିଟି ଯେତେବେଳେ ବୁଦ୍ଧଙ୍କ କଥା କହନ୍ତି, ସେତେବେଳେ ସାରା ପୃଥିବୀ ତାଙ୍କ ଚେତନାର ଅଂଶ ପାଲଟିଯାଏ । ସେ ବରାବର କହନ୍ତି, ଯେଉଁ ଉତ୍କଳୀୟତା କଥା ସେ କହୁଛନ୍ତି, ତାହା ବିଶ୍ୱଚେତନାଠୁ ଅଲଗା ନୁହେଁ । ଏମିତି ଉଦାର ଜାତୀୟବାଦୀ ବ୍ୟକ୍ତି ସତରେ ବିରଳ ।

ଜଗତୀକରଣ ଏବଂ ଶିଳ୍ପାୟନ ବିପକ୍ଷରେ ତାଙ୍କର ମତ ଥିଲା ଅତ୍ୟନ୍ତ ସ୍ପଷ୍ଟ । ତାଙ୍କ ସମସାମୟିକ ଲେଖକମାନେ ଯେତେବେଳେ ଶିଳ୍ପାୟନ ବିରୋଧରେ ପଦୁଟିଏ କହିବାକୁ ନାରାଜ, ସେତେବେଳେ ନିୟମିତ ଭାବରେ ସୁରସିଂହ ପଟ୍ଟନାୟକ ବହୁଦେଶୀୟ କମ୍ପାନୀମାନଙ୍କ ବିରୋଧରେ ନିୟମିତ ଲେଖି ଚାଲିଥିଲେ । ଓଡ଼ିଶାର ଜମି, ଜଳ ଓ ଜଙ୍ଗଲକୁ ନେଇ ଆଦିବାସୀର ସଂଘର୍ଷକୁ ସେ ଭଲ ପାଉଥିଲେ । ଗୋପୀନାଥ ମହାନ୍ତିଙ୍କ ଆଦିବାସୀ ଆଜି କାହିଁକି ମାଓବାଦୀ ପାଲଟିଛି, ତାକୁ ନେଇ ସେ ଅନେକ ଭାବୁଥିଲେ । କେବଳ ଭାବୁନଥିଲେ ନିୟମିତ ଲେଖୁଥିଲେ । ମରିବା ପର୍ଯ୍ୟନ୍ତ ତାଙ୍କ କଲମ ଥମି ଯାଇନଥିଲା । ତାଙ୍କର ଶେଷ ପର୍ଯ୍ୟନ୍ତ ସେ ଚାଲିବାର ଓ ଲେଖିବାର ସମସ୍ତେ ଦେଖିଛନ୍ତି । ଜୀବନରେ ଥକି ପଡ଼ିନଥିବା ଲୋକଟି ସୁରସିଂହ ପଟ୍ଟନାୟକ । କ୍ଳାନ୍ତିରେ ଘଡ଼ିଏ ବସିଯିବା ତାଙ୍କ ଜାତକରେ ନଥିଲା । ମରିବା ଯାଏ ସେ ସ୍ୱପ୍ନ ଦେଖୁଥିଲେ ଏକ ମହାନ୍ ଓଡ଼ିଶାର । ସେ ମହାନ୍ ଓଡ଼ିଶା ଭିତରେ ଥିଲେ ଓଡ଼ିଶାର ଅବହେଳିତ, ନିଷ୍ପେଷିତ ଏବଂ ଯୁଗ ଯୁଗ ଧରି ପ୍ରକୃତିକୁ ଜଗି ରହିଥିବା ଆଦିମ ଆଦିବାସୀ ସମାଜ । ସେ ସ୍ୱପ୍ନ ତାଙ୍କ ଆଖିରେ ଯିଏ ରୋପଣ କରିଥିଲେ, ସେ ଥିଲେ ଉତ୍କଳ ଗୌରବ ମଧୁସୂଦନ ଦାସ ଓ ଗୋପୀନାଥ ମହାନ୍ତି । ସେ ସ୍ୱପ୍ନକୁ ବଞ୍ଚାଇବା ପାଇଁ ତାଙ୍କ ଭିତରେ ଯିଏ ପ୍ରେରଣା ଯୋଗାଇଥିଲେ ସେ ଥିଲେ ଭଗବାନ ବୁଦ୍ଧ ଏବଂ ସେ ସ୍ୱପ୍ନକୁ ସାର୍ଥକ କରିବା ପାଇଁ ଏକ ସମାଜବାଦୀ ସମାଜ ଗଢ଼ିବାର ସଂଘର୍ଷ ପାଇଁ ତାଙ୍କୁ ପ୍ରେରଣା ଦେଇଥିଲେ ଡ. ଭୀମରାଓ ଆମ୍ବେଦକର । ତିନୋଟି ପରସ୍ପର ଭିନ୍ନ ବ୍ୟକ୍ତିତ୍ୱର ଯଦି ଗୋଟିଏ ବ୍ୟକ୍ତି ଭିତରେ ଦେଖିବାର ସୁଯୋଗ ମିଳିଛି, ସେ ବ୍ୟକ୍ତିଟି ହେଉଛନ୍ତି ସୁରସିଂହ ପଟ୍ଟନାୟକ ।

*ସୁରସିଂହ ପଟ୍ଟନାୟକ ସ୍ମାରକୀ କମିଟି, ଭୁବନେଶ୍ୱର*



## ସୁରସିଂହ ପଟ୍ଟନାୟକ
## ସ୍ମାରକୀ କମିଟି, ଭୁବନେଶ୍ୱର

ଶ୍ରୀମତୀ ନୀରଦପ୍ରଭା ପଟ୍ଟନାୟକ

ଜୟସିଂହ ପଟ୍ଟନାୟକ

ଶାକ୍ୟସିଂହ ପଟ୍ଟନାୟକ

ଅମରେଶ ପଟ୍ଟନାୟକ

ପ୍ରଫୁଲ୍ଲ ସାମନ୍ତରା

ଅଭୟ ସିଂ

ଅସିତ ମହାନ୍ତି

ସୁଧୀର ପଟ୍ଟନାୟକ

ବିଘ୍ନେଶ୍ୱର ସାହୁ

କେଦାର ମିଶ୍ର

ସୁଶାନ୍ତ







# ଚାହା ଖିଆ ମଉଜ

'ଚାହା ଖିଆ ମଉଜ' ମୋର ଜୀବନସ୍ମୃତିର ଏକ ଅବିଚ୍ଛେଦ୍ୟ ଅଂଶ । ମୋର ଜୀବନକାଳର ୭୭ବର୍ଷ ବୟସରେ ବିସ୍ମୃତି ଗର୍ଭରୁ ତାହାର ପ୍ରାସଙ୍ଗିକତା ହଠାତ୍ ଉଦ୍ଭାବିତ ହୋଇଉଠିଲା ।

ମୋର ଜନ୍ମ ୧୯୩୨ସାଲରେ, ସେ ବେଳର ମାଡ୍ରାସ ପ୍ରେସିଡେ଼ନ୍ସିର ବିଭାଜିତ ଓଡ଼ିଆଭାଷୀ ଅଞ୍ଚଳ ଗଞ୍ଜାମ ଜିଲ୍ଲାର ଆସିକାଠାରେ । କେବେ ଜନ୍ମ ହେଲି ତାହାର ସ୍ମୃତି ତ ମନେ ନରହିବା କଥା । ମାତ୍ର ବାଲ୍ୟକାଳର ଯେଉଁ ପ୍ରଥମ ସ୍ମୃତିଟି ଏପର୍ଯ୍ୟନ୍ତ ଶରତ ସକାଳର ଗଙ୍ଗଶିଉଳି ପରି ତାଜା ଆଉ ସତେଜ ରହିଛି,ତାହା ହେଉଛି ସ୍ୱତନ୍ତ୍ର ଓଡ଼ିଶାର ପହିଲି ଜନ୍ମତିଥି ୧୯୩୬ ସାଲର ଏପ୍ରିଲ ପହିଲା । ସେ ଦିନର ପୁଣ୍ୟ ପ୍ରଭାତର ନବ ସୂର୍ଯ୍ୟୋଦୟର ଝଲସା କିରଣରେ ବୋଳି ହୋଇ ଶୋଭାଯାତ୍ରାରେ ବାହାରିଥାନ୍ତି ଆସିକା ହାଇସ୍କୁଲର ଛାତ୍ରଛାତ୍ରୀଗଣ । ସମ୍ମୁଖରେ ମର୍ଦ୍ଦଳ ଆଉ ହାରମୋନିଏମ୍‌ରେ ଉଚ୍ଛ୍ୱସିତ କଣ୍ଠରେ ଗାନ କରାଯାଉ ଥିଲା ଉତ୍କଳ ଜନନୀଙ୍କର ସ୍ୱାଗତିକା । ତାହାର ପର ଧାଡ଼ିରେ ଆଆନ୍ତି ମୋର ବଡ଼ଭଉଣୀ ନୀରଦପ୍ରଭା, ଆଉ ଦେଶସେବୀ ନିରଞ୍ଜନ ପଟ୍ଟନାୟକଙ୍କର ଜ୍ୟେଷ୍ଠାକନ୍ୟା ବାସନ୍ତୀ ଅପା ପ୍ରମୁଖ । ମୋର ସେହି ଚାରିବର୍ଷ ବୟସରେ ହାପ୍ ପ୍ୟାଣ୍ଟ୍ ଆଉ ଅଙ୍ଗୀ ପିନ୍ଧି ଦଉଡ଼ି ଯାଇଥିଲି ଶୋଭାଯାତ୍ରା ସହିତ କିଛିବାଟ ଆଉ ମୋର ବଡ଼ଭଉଣୀ ହାତରୁ ଛଡ଼ାଇ ଆଣିଥିଲି ମିଠାଇ ପୁଡ଼ାଟି । ପରେ ଶୁଣିଥିଲି ସେହି ଶୋଭାଯାତ୍ରାଟି ଯାଇଥିଲା ପ୍ରଖ୍ୟାତ



ଜନନାୟକ ହରିହର ପଣ୍ଡାଙ୍କର ବାସଭବନ ପର୍ଯ୍ୟନ୍ତ,ତାହାଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ! ତା'ପର ପରବର୍ଷ ପୂଣ୍ୟଶ୍ଳୋକ ହରିହର ପଣ୍ଡାଙ୍କର ତିରୋଧାନ ଘଟିଥିଲା । ଆଉ ସ୍ୱାଧୀନତା ପ୍ରାପ୍ତିପରେ ଆସିକା ହାଇସ୍କୁଲଟି ହରିହର ହାଇସ୍କୁଲ ନାମରେ ମାନ୍ୟତାପ୍ରାପ୍ତ ହୋଇଥିଲା ।

ଦୁଇବର୍ଷ ତଳେ ଓଡ଼ିଶା ରାଜ୍ୟ ଅଭିଲେଖାଗାରରେ ୧୯୩୫ସାଲର ସାପ୍ତାହିକ ଆଶା ପତ୍ରିକାଟି ଓଲଟାଉ ଥିଲି । ହଠାତ୍ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ଆସି ମୋର ହାତରୁ ପତ୍ରିକା ବିଡ଼ାଟି ଛଡ଼ାଇ ନେଇ ନିଜର ଅଜାଣତରେ ଗୋଟିଏ ପୃଷ୍ଠା ଖୋଲି ମୋର ଆଗରେ ଟିକିଏ ଉଚ୍ଛ୍ୱସିତ ସ୍ୱରରେ ପଢ଼ିଲେ । ତାହା ଥିଲା ପାରଳାଖେମୁଣ୍ଡି କଲେଜର ଜଣେ ପୂର୍ବତନ ଅଧ୍ୟାପକ ଆଉ ଆନ୍ଧ୍ରବାସୀଙ୍କର ଦେଶମିଶ୍ରଣ ଆନ୍ଦୋଳନର ବିପକ୍ଷବାଦୀ ତୁଙ୍ଗ ନେତୃପୁରୁଷ ସୀତାପତିଙ୍କ ଉକ୍ତି । 'ଗଞ୍ଜାମ ଥିଲା ମାଡ୍ରାସ ପ୍ରେସିଡେନ୍ସୀର ଗୋଟିଏ ସର୍ବବୃହତ୍ତମ ଜିଲ୍ଲା, ଯାହାର ବ୍ୟାପ୍ତି ଚିଲିକା କୂଳଠାରୁ ଶ୍ରୀକାକୁଳମ ତଟବର୍ତ୍ତୀ ନାଗାବଳୀ ନଦୀ ପର୍ଯ୍ୟନ୍ତ । ଏହି ସୁବିଶାଳ ଅଞ୍ଚଳର ଆନ୍ଧ୍ରଭାଷୀମାନେ ସେମାନଙ୍କର ନିଜସ୍ୱ ସୁରକ୍ଷାର ସ୍ଥଳୀ ରୂପେ, ସୁଦୃଶ୍ୟ ବ୍ରହ୍ମପୁର ସହରକୁ ଗଢ଼ିଥିଲେ ଆଉ ମହୁମାଛିମାନେ ମହୁଫେଣା ତିଆରି କରି ମହୁ ରଖିଲାପରି ଆନ୍ଧ୍ରଭାଷୀ, ସେମାନଙ୍କର ସମସ୍ତ ସଞ୍ଚିତ ଅର୍ଥ ଆଉ ସମ୍ପତ୍ତିକୁ ବ୍ରହ୍ମପୁରରେ ଜମା କରିଥିଲେ । ଅତୀବ ଦୁଃଖର ବିଷୟ, ବର୍ତ୍ତମାନ ବ୍ରହ୍ମପୁର ସହର ପ୍ରସ୍ତାବିତ ଓଡ଼ିଆ ଭାଷୀ ସୀମାମଧ୍ୟରେ ରହିଯାଇଛି । ତାହାକୁ ବାତିଲ କରିବା ପାଇଁ ଦୁରନ୍ତ ସଂଗ୍ରାମର ସଂଚାଳନ ଆବଶ୍ୟକ ।' ଆହା, କିଭଳି ବକ୍ତବ୍ୟ ! ସୀତାପତିଙ୍କ ପ୍ରଦତ୍ତ ଏହି ମନ୍ତବ୍ୟ ଅନେକାଂଶରେ ସତ୍ୟ । କିଭଳି ଭାବରେ ଗଞ୍ଜାମ ଜିଲ୍ଲାର ବୃହତ୍ ଭାଗ ପାରଳାଖେମୁଣ୍ଡି ଜମିଦାରୀର ଏକ ତୃତୀୟାଂଶ ଆଉ ଜୟପୁର ଜମିଦାରୀ ଓଡ଼ିଶାପ୍ରଦେଶ ଭିତରକୁ ଆସିଲା, ତାହା ସେ ଯୁଗର ଉତ୍ସର୍ଗୀକୃତ ନେତୃପୁରୁଷଙ୍କର ମହନୀୟ ଅବଦାନ ଅଟେ । ଏହା ପ୍ରଶାସନର ସମ୍ବେଦନଶୀଳ ମନୋବୃତ୍ତି ଯୋଗୁଁ ସମ୍ଭବପର ହୋଇଥିଲା, ମାତ୍ର ସ୍ୱାଧୀନ ଭାରତରେ ଏହା ଆଶା କରିବା ଏକାନ୍ତ ନିର୍ବୋଧତା ଥିଲା । ବର୍ତ୍ତମାନର ଏକବିଂଶ ଶତାବ୍ଦୀର ପ୍ରଥମ ଦଶାବ୍ଦୀରେ ଓଡ଼ିଆ ଜାତୀୟତାର ଶେଷ ସ୍ଫୁଲିଙ୍ଗ ମଧ୍ୟ ନିର୍ବାପିତ ହୋଇଯାଇଛି । ଅଷ୍ଟାବିଂଶ ଶତାବ୍ଦୀର ଶେଷ ଅର୍ଦ୍ଧଭାଗରେ ମରହଟ୍ଟାଯୁଗର ବର୍ଗୀଶାସନର ଉଗ୍ର ଅବଲୁଣ୍ଠନର ତ୍ୱରାନ୍ୱିତ ପ୍ରକ୍ରିୟାର ପୁନରାବୃତ୍ତି ହିଁ ଘଟିଚାଲିଛି ।



ଗୋଟିଏ ଲଘୁରସର ଉଚ୍ଚକିତ ସ୍ୱରରେ ଲେଖାଟି ଆରମ୍ଭ କରିଥିଲି । ମାତ୍ର, ତାହାର ଗତିପଥ ପରିବର୍ତ୍ତନ ହୋଇଯାଇଥିଲେ ମଧ୍ୟ ମୂଳ କଥାବସ୍ତୁକୁ ଫେରିଆସୁଛି । ତାହାର ଚାରିବର୍ଷ ପରର କଥା । ତାହା ଥିଲା ୧୯୪୦ ସାଲ । ଏ ମଧ୍ୟରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବା ପରେ କିଛି ଉତ୍ତରଓଡ଼ିଶାର ଅଧିକାରୀ ଓ କର୍ମଚାରୀ ଆସି ଗଞ୍ଜାମ ଅଞ୍ଚଳର ଦପ୍ତରରେ ଯୋଗ ଦେଇଥାନ୍ତି । ସେହିବର୍ଷ ରସଲକୁଣ୍ଡା (ଭଞ୍ଜନଗର) ହାଇସ୍କୁଲରେ ମୁଁ ପଞ୍ଚମଶ୍ରେଣୀରେ ପଢୁଥାଏ,

ଯେଉଁଠାରେ ମୋର ବାପା ପ୍ରଧାନ ଶିକ୍ଷକ ଥା'ନ୍ତି । ମୁଁ ରସଲକୁଣ୍ଡାରୁ ଖଲ୍ଲିକୋଟ ଯାଇଥାଏ,ଯେଉଁଠାରେ ମୋର ମଉସା ସ୍ୱନାମଧନ୍ୟ ପର୍ଶୁରାମ ବର୍ମା ପ୍ରଧାନ ଶିକ୍ଷକ ଥା'ନ୍ତି । ମୁଁ ବଡ଼ ମାଉସୀଙ୍କର ଆନ୍ତରିକ ସ୍ନେହ ବନ୍ଧନରେ ବାନ୍ଧିହୋଇ ଖଲ୍ଲିକୋଟରେ କିଛିକାଳ ଅବସ୍ଥାନ କରି ରସଲକୁଣ୍ଡା ଏକାକୀ ଫେରୁଥାଏ । ଖଲ୍ଲିକୋଟରୁ ଆସିକା ବସ୍‌ରେ ଆସି ବସ୍‌ଷ୍ଟାଣ୍ଡରେ ଖାଣ୍ଟି ଗୁଆଘିଅରେ ଛଣା ପୁରି ଓ ଉପମା ଜଳଖିଆ ଦୋକାନରେ ଖାଇ ପରବର୍ତ୍ତୀ ବସ୍‌ରେ ରସଲକୁଣ୍ଡା ଯିବାପାଇଁ ଅପେକ୍ଷା କରିଥାଏ । ହଁ, ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଥିଲେ ମଧ୍ୟ ଡାଲଡା ବନସ୍ପତି ଘିଅର ପ୍ରଚଳନ ଆରମ୍ଭ ହୋଇନଥାଏ । ତେଣୁ ସବୁ ପିଠା ଛଣା ଗୁଆଘିଅରେ ହେଉଥାଏ, ଯାହା ଏ ଯୁଗରେ ସ୍ୱପ୍ନଭଳି ମନେହୁଏ । ମୂଳକଥାକୁ ଆସିବା । ଏତିକିବେଳେ ଆସିକା ବସ୍‌ଷ୍ଟାଣ୍ଡରେ ହାରମୋନିଏମ୍ ବଜାହୋଇ, ମଧୁରସ୍ୱରରେ ଗୀତ ବୋଲାଯାଇ, ଦୁଇ ପଇସିକିଆ ଗୀତବହି ବିକ୍ରି କରାଯାଉଥାଏ । ସେହି ସଙ୍ଗୀତ ବୋଲାପାଖରେ ପ୍ରବଳ ଭିଡ଼ ଜମିଥାଏ । ସେହି ସଙ୍ଗୀତ ଗାନର ପ୍ରଥମ ଚାରି ଧାଡ଼ି ହେଲା -

'ଭାଇ! ଚାହାଖିଆ ମଉଜ, ଆଉ ରହିବ ନାହିଁ,
କଟକୀବାବୁ ଯେ ଗଞ୍ଜାମେ ପଶିଲେ
ମୁଢ଼ି ଜଳଖିଆ ଦେଲେ ଶିଖାଇ
ଭାଇ! ଚାହା ଖିଆ ମଉଜ ଆଉ ରହିବ ନାହିଁ ।'

ମୁଁ ରସଲକୁଣ୍ଡାରେ ପହଞ୍ଚିଲା ପରେ ମଧ୍ୟ ଏହି ଗୀତର ପ୍ରସାର ବଢ଼ିଥାଏ, ଯାହା ଶିକ୍ଷାୟତନ ବା ସାଂସ୍କୃତିକ କ୍ଷେତ୍ରକୁ ପ୍ରଭାବିତ କରିନଥାଏ । ନୂଆ ପରିସ୍ଥିତିରେ ଏହିଭଳି ପ୍ରତିକ୍ରିୟା ହେବା ସ୍ୱାଭାବିକ । ପୁରୁଣା ମାଡ୍ରାସ ପ୍ରେସିଡେନ୍ସୀର ଅଂଶରୂପେ ଗଞ୍ଜାମ ଜିଲ୍ଲାରେ ଚାହା ବିଶେଷତଃ ଆନ୍ଧ୍ରଭାଷୀଙ୍କ ମଧ୍ୟରେ କଫି ପିଆର ପ୍ରଚଳନ ବେଶୀ ଥିଲା । ଉତ୍ତର ଓଡ଼ିଶାର କଟକ,ପୁରୀ ଅଞ୍ଚଳ ଅପେକ୍ଷା ଉତ୍ତର ବାଲେଶ୍ୱର ଓ ମୟୂରଭଞ୍ଜ ଅଞ୍ଚଳରେ ମୁଢ଼ିର ପ୍ରଚଳନ ବହୁତ ବେଶୀ ଥିଲା । ଏପରିକି ଦିନର ସକାଳେ ଓ ରାତ୍ରିରେ ମୁଢ଼ି ସହିତ କଷା ତରକାରୀରେ ଭୋଜନ ଚଳିଯାଏ, ଯାହାର ପରମ୍ପରା କଲିକତା ପର୍ଯ୍ୟନ୍ତ ପରିବ୍ୟାପ୍ତ । ସେ ଅଞ୍ଚଳରେ ମୁଢ଼ି ଚାଉଳ ପାଇଁ ସ୍ୱତନ୍ତ୍ର ଚାଷଜମି ଆଉ ସ୍ୱତନ୍ତ୍ର ତିଆରି ପ୍ରକ୍ରିୟା । ଏହା ସତ୍ତ୍ୱେ ମୁଢ଼ି ଉସୁନା, ପର୍ବପର୍ବାଣୀରେ ଚଳେନାହିଁ । ଗଞ୍ଜାମରେ ଚଳେ ଦୋ'ଭଜା ବା ହୁଡୁମ୍ବ, ଯାହା ଅରୁଆ; ପର୍ବପର୍ବାଣୀରେ ଚଳେ ଓ ଏପରିକି ଦୂରବାଟ ଅବା ରେଙ୍ଗୁନ ଯିବାପାଇଁ ବସ୍ତା ବସ୍ତା ହୁଡୁମ୍ବ ଚାଲାଣ ହୁଏ । କଥାଟି ସେଇଠି ନୁହେଁ, ତାହାଥିଲା କିଛି ମାନସିକ ପ୍ରତିକ୍ରିୟାର ପରିପ୍ରକାଶ । ସେ କାଳରେ ଉତ୍ତର ଓଡ଼ିଶାରେ ଲୋକଙ୍କୁ ବେଳେବେଳେ ମୁଢ଼ି ବୋଲି ଆଖ୍ୟାୟିତ କରାଯାଉଥିଲା । ଦୁଇ ସଂସ୍କୃତିରେ ଆପୋଷ ମିଳାମିଶାରେ ଏବେ ତାହା ଅବଲୁପ୍ତ । ମିଶ୍ରଣ ପ୍ରକ୍ରିୟା



ଏହିଭଳି ସ୍ୱତଃସ୍ଫୂର୍ତ୍ତ ଥିଲା ଯେ କାହାଠାରୁ କିଏ କେତେ ଗ୍ରହଣ କରିଛନ୍ତି ତାହାର ପରିମାପ ଏକାନ୍ତ ଅସମ୍ଭବ । ୧୮୯୨-୯୩ ସାଲ୍‌ରେ ଭଞ୍ଜ ଓ ରାଧାନାଥ ସଂଘର୍ଷ ମଧ୍ୟରେ, ରାଧାନାଥଙ୍କର ଶେଷ ସ୍ୱୀକୃତି 'ମୋହଠାରୁ ଅଧିକ ଭଞ୍ଜଙ୍କର ଅନୁଗାମୀ ଆଉ କିଏ ଅବା ଅଛି ?' ଏତିକିରେ ବିତର୍କର ସମାଧାନ ହୋଇଯାଇଥିଲା । ଏହା ହିଁ ସଂସ୍କୃତିର ଆଦାନପ୍ରଦାନ ।

ଆମର ଶିକ୍ଷକ ପରିବାରରେ ଚାହାର ପ୍ରଚଳନ ଏକପ୍ରକାର ନିଷିଦ୍ଧ ଥିଲା । ତଥାପି ଆମର କିଛି ଅନ୍ତରଙ୍ଗ ବନ୍ଧୁ ଚାହାର ପରମ ଭକ୍ତ । ସେମାନେ କିମ୍ବା କିଛି ଅନ୍ୟ ବିଶିଷ୍ଟ ଅତିଥି ଆସିଲେ ବୋଉକୁ ଅତ୍ୟନ୍ତ ବାଧ୍ୟବାଧକତାରେ ଚାହା ତିଆରି କରିବାକୁ ପଡ଼େ । ଅନ୍ୟ ସମସ୍ତ ରନ୍ଧାପାଇଁ ବୋଉକୁ ଉଚ୍ଛ୍ୱସିତ ପ୍ରଶଂସା ମିଳୁଥିଲେ ମଧ୍ୟ ଚାହା ପାଇଁ କେବେ ମିଳିବାର ମୁଁ ଜାଣେନାହିଁ । ସେ ଚାହାର ସ୍ୱାଦ କିପରି ଥିଲା ଥରେ ମାତ୍ର ମୁଁ ପରୀକ୍ଷା କରିନାହିଁ । ଅଥଚ ଅତିଥି ହିସାବରେ କିମ୍ବା ବନ୍ଧୁମେଳରେ ଚାହା ଖୁବ୍ କ୍ୱଚିତ ଥର ମୁଁ ଯେ ପିଇଛି, ମୋର ମନେନାହିଁ ।

ତାହାଥିଲା ୧୯୭୪ର ଡିସେମ୍ବର ମାସର ଉତ୍କଟ ହେମାଳଜାତ ଦିନର ହୃତ୍‌କମ୍ପକାରୀ ଶୀତଋତୁ । ହଠାତ୍ ଚାକିରିର ପରିବର୍ତ୍ତନ ପ୍ରକ୍ରିୟା ମଧ୍ୟରେ ମତେ ଯୋଗଦେବାକୁ ପଡ଼ିଲା କଳାହାଣ୍ଡିର ଭବାନୀ-ପାଟଣାରେ । ଦୁର୍ବାର କୋହକା ଶୀତର ଅତୀବ ଆତଙ୍କିତ ସମୟ । ଶୀତର ଅଲଂଘ୍ୟ ପ୍ରକୋପ କାଟିବା ପାଇଁ ବନ୍ଧୁମେଳରେ କେତେଥର ଚାହା ପିଇଥାଏ, ତାହାର ହିସାବ ନାହିଁ । ଶୀତର ଗାରିମାମୟ ପ୍ରଖରତା ବଢ଼ିବା ସଙ୍ଗେ ସଙ୍ଗେ, ଚାହା ପିଆଟା ଅତ୍ୟନ୍ତ ଉପଭୋଗ୍ୟ ସମାରୋହରେ ପରିଣତ ହୋଇଥାଏ । ମୋଭଳି ନବାଗତ ଅତିଥିଙ୍କ ପାଇଁ ପ୍ରଚୁର ଆତିଥେୟତା ମିଳିଲା । ମାତ୍ର ସେତେବେଳର ଚାହା କପ୍‌ର ଦାମ୍‌ଥିଲା ମାତ୍ର ଚାରିଅଣା ପଇସା । ସେତେବେଳେ ତାହା ଦେବା ବୋଧହୁଏ କଷ୍ଟସାଧ୍ୟ ଥିଲା । ପରବର୍ତ୍ତୀ ବର୍ଷ ଚାହା କପ୍‌ର ଦାମ ବଢ଼ିଲା ତିରିଶିପଇସାକୁ, ସେତେବେଳେ ତାହା ଆମକୁ ଆତଙ୍କିତ କରିଥିଲା । ମୁଁ ଯେତେବେଳେ ଦୀର୍ଘ ପନ୍ଦର ବର୍ଷ ପରେ ୧୯୯୦ମସିହାରେ ସମୁଦ୍ରର ବେଳାଭୂମି ତୀରରେ ଗୋପାଳପୁରରେ ଚାକିରିରୁ ଅବସର ନେଇ ଅବସ୍ଥାନ କଲି, ଚାହାକପ୍‌ର ଦାମ ଥିଲା ବୋଧହୁଏ ଏକଟଙ୍କା । ଆଉ ଅଠରବର୍ଷ ପରେ ୨୦୦୮ ସାଲରେ, ତାହାର ଦାମ୍ ପହଞ୍ଚିଥିଲା ମାତ୍ର ଦୁଇଟଙ୍କାକୁ । ହେଲେ ଗୋପାଳପୁରରେ ଶୀତଦିନରେ ବିଦେଶୀ ପର୍ଯ୍ୟଟକମାନେ ପିଅନ୍ତି ଲାଲ୍ ଟୁକୁ ଟୁକୁ ସାଧବବୋହୂ ରଙ୍ଗର ଚାହା ହେମାଳ ଶୀତକୁ କାଟିବାପାଇଁ, ହେଲେ ମତେ ତାହା କେବେ ଆକର୍ଷିତ କରିନଥିଲା, କାରଣ ତାହା ସହିତ ସମ୍ପର୍କିତ ଥିଲା ଦୟନୀୟ ସାଧବ ବୋହୂର ନିର୍ଯାତିତ କାହାଣୀ । ହଁ ଏବେ ୨୦୦୮ସାଲରେ ମୁଁ କିଛିକାଳ ରହୁଥିଲି ଭୁବନେଶ୍ୱର ଗଣ୍ଡମୁଣ୍ଡାରେ । ସେତେବେଳେ ତ ମୋର ଏକମାତ୍ର ବ୍ୟସନଥିଲା ଗଣ୍ଡମୁଣ୍ଡା ଛକର ତାଳବଣିଆର ବିସ୍ତାରିତ ଗଛମୂଳର ଚାହା ଦୋକାନରେ ମାତ୍ର ଦୁଇଟଙ୍କା ବିନିମୟରେ ଚାହା ଏକକପ୍ ପିଇବା । ପୂଜା ଛୁଟିରେ ଆସିଲି ସହିଦନଗରକୁ । ପୂଜାପତ୍ରିକା ସମାରୋହ ବଜାରକୁ ଯିବାବାଟରେ ମୋର ପ୍ରିୟ ପରିଚିତ ଚାହା ଦୋକାନରେ ପହଞ୍ଚିଲା ବେଳକୁ ସେହି ନାଲି ଚାହାର କାଟ୍‌ତି ବହୁତ ଥିଲା । ଆଖିବୁଜି ସେହି ଚାହା ପିଇଦେଲି ଆଉ ଜାଣିଲି ତାହା ଥିଲା ଚିନିମିଶା ଲେମ୍ବୁ ଚାହା, ଯଦିଓ ମୋ ପରି ଅଭିଜାତ ଡାଇବେଟିସ ରୋଗୀଙ୍କ ପାଇଁ ଚିନି ନିଷିଦ୍ଧଥିଲା । ଚାହା ପିଇସାରି ଦୁଇଟଙ୍କା ଦେଲି





ଆଉ ମୋ ପାଖେ ଥାଏ ଦୁଇଟି ଟଙ୍କା କଡ଼ା ପାନଖିଲ ଦୁଇଟି ପାଇଁ । ଏହା ନିତିଦିନିଆ ଅଭ୍ୟାସରେ ପରିଣତ ହୋଇଗଲା,ଯଦିଓ ଖବରକାଗଜରେ ଓମ୍‌ଫେଡ଼ର ଦୁଗ୍ଧଦର ବୃଦ୍ଧି ପ୍ରମୁଖ ସ୍ଥାନ ଗ୍ରହଣ କରିଥାଏ ।

କିଛିଦିନ ପରେ ମୁଁ ଟିକିଏ ଡେରିରେ ଗଲି । ଦୋକାନର ଭିଡ଼ ମଧ କମି ଯାଇଥାଏ ଆଉ ନାଲି ଲେମ୍ବୁ ଚାହା ମଧ୍ୟ ସରିଯାଇଥାଏ । ମୋର ପକେଟରେ ଥାଏ ମାତ୍ର ଚାରିଟଙ୍କା-ଦୁଇଟଙ୍କା ଚାହା ପାଇଁ ଆଉ ଦୁଇଟଙ୍କା କଡ଼ା ପାନଦୁଇଟି ପାଇଁ । ଦୋକାନୀ ମତେ ଦେଖି ଲେମ୍ବୁ ଚାହା ବଦଳରେ ଦୁଧରେ ତିଆରି ଚାହା କପ୍‌ଟିଏ ବଢ଼େଇ ଦେଲା । ମୁଁ ମଧ ତାହା ପିଇସାରି ସ୍ୱାଭାବିକ ରୀତିରେ ଦୁଇଟଙ୍କା ଦେଲି ଅତ୍ୟନ୍ତ ସମାହିତ ଚିତ୍ତରେ । କିଛି ବନ୍ଧୁଙ୍କର ସହିତ ଖୁସି ଆଳାପରେ ମତ୍ତ ରହିଥିଲି । ଅଳ୍ପ ସମୟ ବିତିଗଲା । ହଠାତ୍ ଚାହା ଦୋକାନୀଟି କ୍ରୋଧାନ୍ୱିତ ହୋଇ ତୀବ୍ର ଝିଙ୍ଗାସାର ସ୍ୱରରେ କହିଲା, 'ହେ ବାବୁ ! ସବୁଦିନ ଚାହା ପିଇଚାଲିଛ, ଆଜି ଦୁଇଟଙ୍କା ମାତ୍ର ଦେଉଛ, ଲାଜ ଲାଗୁନାହିଁ । ଆଠ ଦଶଦିନ ହେଲା ଚାହାକପ୍ ଚାରିରୁ ପାଞ୍ଚଟଙ୍କା ହେଲାଣି । ଓମ୍‌ଫେଡ଼ କ୍ଷୀରର ଦାମ ଚାରିଟଙ୍କା ବଢ଼ାଇ ଦେଲାଣି, ତମେ ଦୁଇଟଙ୍କା ଦେଇ ଚୁପ୍‌ହୋଇ ରହିଛ । ତମେ ନିତିଦିନିଆ ଗରାଖ, ତିନିଟଙ୍କା ନହେଲେ ଦୁଇଟଙ୍କା ବଢ଼ାଇ ଦିଅ ।' ମୁଁ ଅଗତ୍ୟା ପକେଟକୁ ଅଣ୍ଡାଳିଲି । ମାତ୍ର ଥିଲା ଦୁଇଟଙ୍କା ମୁଦ୍ରାଟିଏ,ଚାହା ପିଇବାପରେ କଡ଼ା ଗୁଣ୍ଡିମିଶା ଖିଲ ଖାଇବା ପାଇଁ । ସେହି ଦୁଇଟଙ୍କା ବଢ଼ାଇ ଦେଲି । କଡ଼ାପାନ ନଖାଇ ତୁଣ୍ଡଟା ବିଟିକିଟିଆ ପାଣିଚିଆ ଲାଗିଲା । ହଠାତ୍ ବିରକ୍ତି ଭାବ କାହୁଁ ଆସିଲା । ହତାଶାରେ ମନଟା କ୍ଷୁବ୍ଧ ହୋଇଗଲା । ମୁଦ୍ରାସ୍ଫୀତି କ'ଣ ଏହିପରି ହୁଏ ? ଦୁଇଟଙ୍କାଟା ଚାରିଟଙ୍କା ହୋଇଯାଏ । ସତୁରୀବର୍ଷ ତଳର ବିସ୍ମୃତି ଗର୍ଭରୁ ଚେଇଁ ଉଠିଲା ସେହି ଅବଲୁପ୍ତ ଗୀତଟି -



'ଭାଇ ଚାହାଖିଆ ମଉଜ ଆଉ ରହିବ ନାହିଁ ।' ତେଣିକି ବର୍ତ୍ତମାନ ସ୍ଥିତିରେ ପରବର୍ତ୍ତୀ ପଦଗୁଡ଼ିକ ପୂରଣ କଲି ।

ଭାଇ ! ଚାହାଖିଆ ମଉଜଆଉ ରହିବ ନାହିଁ;
ଓମ୍‌ଫେଡ୍ ଭାଇଯେ ବେପାରେ ପଶିଲେ
ଲେମ୍ବୁଚାହା ପିଆ ଦେଲେ ଶିଖାଇ ।
ଭାଇ ଚାହାଖିଆ ମଉଜ ଆଉ ରହିବ ନାହିଁ ।...

ଖବରକାଗଜରେ ଏହି ଦରବୃଦ୍ଧି ବିଷୟରେ ବହୁ ପ୍ରତିବାଦ ବାହାରୁଥାଏ । ହଠାତ୍ ମୁଖ୍ୟମନ୍ତ୍ରୀ ଦୁଧ ଲିଟର ଚାରିଟଙ୍କା କମାଇଦେଇ ପୂର୍ବର ଦର କାଏମ୍ କଲେ । ମାତ୍ର ଏଣେ ଓମ୍‌ଫେଡ୍ ଘିଅ ଆଉ ଦହିର ଦାମ୍ ବଢ଼ାଇ ଦେଲା । ଆଉ କ୍ଷୀରର ଦାମ ପୂର୍ବଦରକୁ ଆସିଥିବାରୁ ଚାହାଦର ମଧ୍ୟ ପୂର୍ବଦରକୁ ଆସିବାର କଥା । ଏହାର ଚାରିଦିନ ପରେ ଆମେ କିଛି ବନ୍ଧୁ ସାଙ୍ଗମେଳରେ ସେହି ଚାହା ଦୋକାନରେ କ୍ଷୀର ମିଶା ଚାହା କପେ କପେ ପିଇଲୁ । ଆଉ ଜଣେ ଜଣେ ଦୁଇ ଦୁଇଟଙ୍କା ବଢ଼ାଇଦେଲୁ । ଚାହା ଦୋକାନୀଟି ରାଗରେ ପାଚି ଲାଲ୍ ହୋଇଗଲା । ହଠାତ୍ ଉତ୍‌କ୍ଷିପ୍ତ ହୋଇ କହିବସିଲା, 'ହେ ବାବୁମାନେ । ଥରେ ଗୋଟିଏ ଜିନିଷର ଦାମ୍ ବଢ଼ିଗଲେ, ତାହା କ'ଣ କେବେ କମିଯାଏ । ଚାହା କପ୍‌ର ଦାମ୍ ସେହିପରି ଚାରିରୁ ପାଞ୍ଚଟଙ୍କା । ସେ କାଳର ମଜା ଆଉ ନାହିଁ । ଲାଜ ସରମ ଛାଡ଼ି ସମସ୍ତେ ଦୁଇ ଦୁଇଟଙ୍କା ବଢ଼ାଇ ଦିଅ ।

ଏଣୁ ଆମେମାନେ ଅଗତ୍ୟା ପକେଟରେ ବାକିଥିବା ଦୁଇ ଦୁଇଟଙ୍କା ବଢ଼ାଇଦେଲୁ । ଆଉ ଗୁଣ୍ଡିମିଶା କଡ଼ାପାନ ଖିଲ ଖାଇବା ବିନା ହନ୍ତସନ୍ତ ହେଲୁ । ପାଟିଟା ଅରୁଚିରେ ବିଚିକିଟିଆ, ପାଣିଚିଆ ଆଉ ଅସୁଆଦିଆ ଲାଗିଲା । ପେଟଟା ବେଳକୁ ବେଳ ଗୁରାଣ୍ଡି ହେଲା ।

ହେଲେ ପାଣ୍ଡିଆ ସୁବୁଦ୍ଧି କଲା ଗୁଣ୍ଡିମିଶା ପାନଖିଲ ବଦଳରେ ଶସ୍ତା ସିଗାରେଟ ଖଣ୍ଡିଏ ସମସ୍ତେ ମିଶି ପୁଳାଏ ପୁଳାଏ ଟାଣିଲେ ଅସ୍ୱସ୍ତି କିଛି ପରିମାଣରେ କମିଥାନ୍ତା । ହେଲେ ପଚାରିବାରୁ ଚାହାଦୋକାନୀ କହିଲା କି 'ପୋଲିସବାଲା ଦୋକାନରେ ଥିବା ସବୁ ସିଗାରେଟ ବାଜ୍ୟାପ୍ତ କରି ନେଇଗଲେ । ଆଉ କହିଲେ ଭୁବନେଶ୍ୱର କୁଆଡ଼େ ଦେଶର ପ୍ରଥମ ତମାଖୁମୁକ୍ତ ସହର ହେବ ।'

ହଁ, ଆଉ ସୁରେନ୍ଦ୍ର ମହାନ୍ତି ଯେତେବେଳେ କଳାନାଗିନୀ ପରି ବିଂଶ ଶତାବ୍ଦୀର ସେହି ଦୁର୍ଦ୍ଦମନୀୟ ଆଲ୍‌ହାଦ ମିଶା ଯନ୍ତ୍ରଣାର ତୀବ୍ର ଅଭିଶାପ-ଡ୍ରଗସ୍, ହେରୋଇନ, ଏଲ୍.ଏମ୍.ଡ଼ି ସେବନର ଦୁର୍ବାର ପରିଣାମ ସମ୍ପର୍କରେ ୧୯୭୭ସାଲ୍‌ରେ ତାହାଙ୍କର ଅନବଦ୍ୟ ଗ୍ରନ୍ଥ 'ହଂସ ଗୀତି' ରଚନା କଲେ, ସେହି କାହାଣୀର ଉପଜୀବ୍ୟ ଥିଲା ଦିଲ୍ଲୀନଗରୀ ଆଉ ଏହିବର୍ଷ ମ୍ଳାନ ଆଲୋକରେ ଅସ୍ତ ହୋଇଯାଇଥିବା ପ୍ରଖ୍ୟାତ ସାହିତ୍ୟିକ ଗୋବିନ୍ଦ ଦାସ ଏହି ବିଷୟ ଉପରେ ଆଧାରକରି କାଳଜୟୀ ମହାନ କୀର୍ତ୍ତି 'ଅମାବାସ୍ୟାର ଚନ୍ଦ୍ର' ୧୯୬୪ରେ ଯେତେବେଳେ ରଚନା କଲେ, ସେହି କାହାଣୀର ଉପଜୀବ୍ୟ ଥିଲା, ବମ୍ବେ, ମାଡ୍ରାସ ଆଉ ବିଦେଶର ସିଙ୍ଗାପୁର ନଗରୀ । ଆଜିର ଏକବିଂଶ ଶତାବ୍ଦୀରେ ଏହିଭଳି କାହାଣୀର ଚରିତ୍ରାବଳୀ ଆଉ ଘଟଣାପ୍ରବାହକୁ ଖୋଜିବା ପାଇଁ ଦୂରଦେଶକୁ ଯିବାର ଆବଶ୍ୟକ ନାହିଁ । ଭୁବନେଶ୍ୱର ହୋଇଯାଇଛି ସର୍ବୋତ୍‌ଭାବେ ବୟସ୍କ, ପ୍ରବୀଣ ଆଉ ପୋଖତ ଏହି





ଦୁର୍ନିବାର ରହସ୍ୟ ସଙ୍ଗଠିତ ଘଟଣାବଳୀର ନିଛକ ରୂପାୟନ ପାଇଁ । ଏହି ମାରାତ୍ମକ ଜଘନ୍ୟ ଅପରାଧକୁ ସଂଯୋଜିତ କରିବା ପାଇଁ ଅସୀମ ସାମର୍ଥ୍ୟ ଆଉ ସାହସିକତା ହାସଲ କରିଛି ଭୁବନେଶ୍ୱର; ଦିଲ୍ଲୀ, ମୁମ୍ବାଇ ଆଉ ଚେନ୍ନାଇକୁ ପଛରେ ପକାଇ ।' ତୁମେ ଜାଣନାହିଁ ଭୁବନେଶ୍ୱର ହେଉଛି ଦେଶର ସେହି ନଗର, ଯେଉଁଠାରେ ଶିକ୍ଷାୟନ ପାଇଁ ସର୍ବାଧିକ ମୁଦ୍ରା ଖଟାଯାଉଛି' । ଜଣେ ବନ୍ଧୁ ଏହାକୁ ରସଭରା ଚାତୁର୍ଯ୍ୟରେ ବର୍ଣ୍ଣନା କରି କହିଲେ 'ହାବ,ହାବ,ହାବ,ଭୁବନେଶ୍ୱର କୁଆଡ଼େ ହେବ ବିଶ୍ୱର ପ୍ରଥମ ତମାଖୁମୁକ୍ତ ସହର । ଅକଳ୍ପନୀୟ, ଅକଳ୍ପନୀୟ ଆଉ ଅକଳ୍ପନୀୟ । ଏହା ସହିତ ଅପରାଧ ପ୍ରବଣତା ବଢ଼ିଗଲାଣି ବହୁଗୁଣରେ ।' ଆମେ ସବୁ ସେହି ଉଦ୍ଦୀପକ ହାସ୍ୟଲହରୀରେ ସାମିଲ ହେଲୁ ।

ସେହିଦିନ ରାତିରେ ଆମେସବୁ ବନ୍ଧୁ ବହୁଦିନ ପରେ ତ୍ରିନାଥ ଗୋସାଇଁଙ୍କର ଶରଣରେ ଯାଇ ତାହାଙ୍କର ମେଳାକୁ ଗଲୁ । ସେଠାରେ ଅରୁଚିଆ ପାଟିକୁ ସ୍ୱର୍ଗସୁଖ ମିଳିଗଲା,ଯେତେବେଳେ ଚିଲମରେ ପୁଳାଏ ପୁଳାଏ ଗଞ୍ଜେଇ ଟାଣିଲୁ । ଆଉ ଯେତେବେଳେ ମନ୍ଦିର ଭିତରକୁ ଯାଇ ସାଷ୍ଟାଙ୍ଗ ପ୍ରଣିପାତ କରି ଆଉ ତ୍ରିନାଥଙ୍କର ଶରଣରେ ଯାଇ ପୁରା ଗିଲାସେ ଗିଲାସେ ଭାଙ୍ଗମିଶା ଗଞ୍ଜାଇ ପଣାର ପ୍ରସାଦ ପାଇଲୁ, ଆମେ ଯେପରି ଇନ୍ଦ୍ର ଭୁବନରେ ପୁଷ୍ପକ ଯାନରେ ଯାଇ ପହଞ୍ଚିଯାଇଥିଲୁ । ମନ ଉଭଳା ହୋଇଯାଇଥିଲା, ସେହି ଅପୂର୍ବ ବିଭୂତିର ସମ୍ମୋହନରେ ତେଣିକି ଆମେ ନିଜସ୍ୱ ସ୍ମୃତି ସମ୍ପର୍କରେ ଅବହିତ ନଥିଲୁ । ହେଲେ ତ୍ରିନାଥ ମନ୍ଦିର ରାସ୍ତାରେ ଆମେମାନେ ଯିବାବେଳେ ରାସ୍ତାର କାନ୍ଥମାନଙ୍କରେ ନିର୍ବାଚନର ପୋଷ୍ଟର ସବୁ ପ୍ରଦର୍ଶନ କରି ଚାଲିଥିଲୁ । ଆଗକୁ ଆସୁଛି ନିର୍ବାଚନ ବୈତରଣୀ ପାରିହେବାର ବେଳ । ସେଥିପାଇଁ ଆମ୍ଭେମାନେ ତ୍ରିନାଥ ଗୋସାଇଁଙ୍କର ଶରଣରେ ଯାଇ ତାହାଙ୍କୁ ସାକ୍ଷୀ ରଖି ତିନିବାର ଶପଥ ନେଲୁ ନିର୍ବାଚନର ଇସ୍ତାହାର ଆଉ ପ୍ରତିଶ୍ରୁତିର ନିର୍ଧାର୍ଯ୍ୟ କାର୍ଯ୍ୟକାରିତା ସମ୍ପର୍କରେ ସମ୍ୟକ ସିଦ୍ଧାନ୍ତରେ ପହଞ୍ଚିବା ପାଇଁ । ସେହି ଶପଥନେବାର ସିଦ୍ଧାନ୍ତଗୁଡ଼ିକ ହେଲା ।

୧ - ଦୁଇଟଙ୍କିଆ ଚାଉଳପରି,ଗୋପାଳକଙ୍କୁ ଲାଭଜନକ ମୂଲ୍ୟ ଦେଇ, ଯେଉଁ ଦଳ ଗରାଖମାନଙ୍କୁ ଦେଢ଼ଟଙ୍କାରେ ପୁରା କପ୍ ଚାହା ଆଉ ଟଙ୍କାକରେ ହାପ୍ କପ୍ ଚାହା ଯୋଗାଇ ଦେବେ, ତାହାଙ୍କୁ ଭୋଟ ଦେବୁ ।

୨ - ଅବଲୁପ୍ତ ହୋଇଯାଇଥିବା ଓଡ଼ିଆ ଜାତୀୟତାକୁ ଯେଉଁ ଦଳ ପୁନଃରୁଦ୍ଧାର କରିବେ, ସେହି



ଦଳକୁ ଭୋଟ ଦେବୁ ।

୩- ସେହି ଜାତୀୟତାର ଅବଲୁପ୍ତିର ଷୋଡ଼ଶ ଶତାବ୍ଦୀରେ କଳାପାହାଡ଼ର ଶ୍ରୀମନ୍ଦିରର ଦୁର୍ଦ୍ଦାନ୍ତ ଆକ୍ରମଣ ସାରି, ବହିରାଗତ ବେପାରୀଙ୍କର ବିଶ୍ୱାସଘାତୀ ଚକ୍ରାନ୍ତର ଶ୍ରୀଜଗନ୍ନାଥଙ୍କର ମନ୍ଦିରର ପବିତ୍ର ଧର୍ମ ସଂସ୍କୃତିକୁ ବିନଷ୍ଟ କରିବା କେବଳ ନୁହେଁ; ସେ ଯୁଗର ପରମଭକ୍ତିର ଅକୁଳାନ ଶ୍ରଦ୍ଧାରେ ଶ୍ରୀଜଗନ୍ନାଥଙ୍କର ମଣୋହୀ,ଦୀପଦାନ, ଅରକ୍ଷ ଭୋଜନ ଆଦି ମହାନ ପବିତ୍ର ଉଦ୍ଦେଶ୍ୟରେ ପ୍ରଦତ୍ତ ଜମିକୁ ବଳକ୍ରାର ଆଉ ହଡ଼ପ କରି ନେଇଥିବା କମ୍ପାନୀମାନଙ୍କର କବଳରୁ ଉଦ୍ଧାରକରି ଓଡ଼ିଆ ଭକ୍ତଙ୍କର ମାନସିକତାକୁ ସମ୍ମାନ ଆଉ ପ୍ରାଧାନ୍ୟ ଦେବେ, ସେହି ଦଳକୁ ଭୋଟ ଦେବୁ ।

୪- ଅଷ୍ଟାଦଶ ଶତାବ୍ଦୀର ବର୍ଗୀଶାସନ ପରି ଚୁକ୍ତିପତ୍ର (M.O.U)ଦସ୍ତଖତ ମାଧ୍ୟମରେ ଓଡ଼ିଶାର ସମସ୍ତ ଖଣିଜ ସମ୍ପଦକୁ ୨୫ବର୍ଷିଆ ଦୀର୍ଘମିଆଦୀ ଚୁକ୍ତିରେ କମ୍ପାନୀମାନଙ୍କୁ ଟେକିଦେଇ ୨୫ବର୍ଷ ଅଥବା ଅତିବେଶୀ ହେଲେ ମାତ୍ର ଅର୍ଦ୍ଧଶତାବ୍ଦୀ ମଧ୍ୟରେ ପ୍ରାଗ୍‌-ଐତିହାସିକ କାଳରୁ ଭୂଗର୍ଭରେ ସଞ୍ଚିତ ଅତ୍ୟନ୍ତ ସମୃଦ୍ଧ ଖଣିଜସମ୍ପଦକୁ ଅବଲୁଣ୍ଠିତ କରି ଓଡ଼ିଶା ଭୂଇଁରୁ ନିଃଶେଷ କରିବାର ଦୁର୍ଦ୍ଦମନୀୟ ଚକ୍ରାନ୍ତରୁ ଉଦ୍ଧାରକରି ଯେଉଁ ଦଳ ସୀମିତଖଣି ବ୍ୟବହାରରେ ଓଡ଼ିଶାର ଅମୂଲ୍ୟ ଖଣିଜ ସମ୍ପଦକୁ ରକ୍ଷା କରିପାରିବେ, ସେହି ଦଳକୁ ଭୋଟଦେବୁ ।

୫- ଦୁର୍ଦ୍ଦଷ ଖଣିଜ ଶିଳ୍ପାୟନରୁ ଉଦ୍ଭବ ଉତ୍କଟ ପ୍ରଦୂଷଣରୁ ରାଜ୍ୟକୁ ମୁକ୍ତ କରି ସମସ୍ତ ଜଳସମ୍ପଦକୁ ଏକାନ୍ତ ଭାବେ କୃଷିକ୍ଷେତ୍ରରେ ବ୍ୟବହୃତ କରାଇବାର ବ୍ୟବସ୍ଥା କରିପାରିବେ, ସେହି ଦଳକୁ ଭୋଟ ଦେବୁ ।

୬- କନ୍ଧମାଳରେ ଦାବାନଳ ପରି ପ୍ରଜ୍ୱଳିତ ବନାଗ୍ନିର ବିଭୀଷିକାକୁ ଯେଉଁଦଳ ଶୀଘ୍ର ନିର୍ବାପିତ କରିପାରିବେ, ସେହି ଦଳକୁ ଭୋଟଦେବୁ ।

୭- ଆଜିର ଏକବିଂଶ ଶତାବ୍ଦୀରେ,ସେ ଯୁଗର ଅର୍ଦ୍ଧନିଗ୍ରୋ, ଆଉ ଏ ଯୁଗର ଏକାନ୍ତ କୃଷ୍ଣକାୟ 'ଓବାମା' ଯୁକ୍ତରାଷ୍ଟ୍ରରେ ନିର୍ବାଚନରେ ବିପୁଳ ସଂଖ୍ୟାଧିକ ଭୋଟରେ ବିଜୟଲାଭ କରି ସମସ୍ତ ଜାତିଗତ ବର୍ଣ୍ଣଗତ ବିଭେଦକୁ ସମାଧି ଦେଇ ବର୍ତ୍ତମାନ ପ୍ରେସିଡେଣ୍ଟ ରୂପେ ହ୍ୱାଇଟ୍ ହାଉସ୍ (White House) ଅଳଙ୍କୃତ କରିବା ସମୟରେ ଓଡ଼ିଶାର ଶୋଷିତ,ଦଳିତବର୍ଗଙ୍କୁ ଅତୀବ ସମ୍ବେଦନଶୀଳ ହୃଦୟବର୍ତ୍ତୀ ଏବଂ ଉଚ୍ଛ୍ୱସିତ ଭାବବିହ୍ୱଳତାର ସମନ୍ୱୟ ଆଉ ପ୍ରଗାଢ଼ ଆକର୍ଷଣର ନିବିଡ଼ତା ମଧ୍ୟରେ ଉଚ୍ଚଜାତିର ମର୍ଯ୍ୟାଦା ପ୍ରଦାନକରି ସେମାନଙ୍କୁ ମାନସିକ ନିଷ୍ପେଷଣ, ଲାଞ୍ଛନା, ଅପମାନ ଆଉ ହୀନ ଅବମୂଲ୍ୟାୟନରୁ ରକ୍ଷାକରି, ସେହିମାନଙ୍କୁ ମାନବିକତାର ଗୌରବ ପ୍ରଦାନ କରିପାରିବେ, ସେହିଦଳକୁ ଭୋଟ ଦେବୁ । ଏହାକୁ ପୁରାକାଳର ସଂସ୍କୃତି ମଧ୍ୟ ସମର୍ଥନ କରୁଛି ।

୮- ଅନ୍ତିମ ଘୋଷଣା-ଯେଉଁ ଦଳ ଚାହା ଦର କମାଇ ମୁଦ୍ରାସ୍ଫୀତିକୁ ହ୍ରାସ କରିପାରିବେ; ସେହି ଦଳକୁ ଭୋଟ ଦେବୁ ।

ତ୍ରିବାର ସତ୍ୟ, ତ୍ରିବାର ସତ୍ୟ, ତ୍ରିବାର ସତ୍ୟ ।

ଭାଇ ! ଚାହା ଖିଆ ମଉଜ ଫେରିବ ଫେରିବ ।



ତ୍ରିନାଥ ଗୋସାଇଁ ଜିନ୍ଦାବାଦ ଜିନ୍ଦାବାଦ ।

('ସମଦୃଷ୍ଟି'-୧୬-୩୧ ଡିସେମ୍ବର-୨୦୦୮)





## ଏକ ସାକ୍ଷାତକାର

# ଗୋପୀବାବୁଙ୍କ ଆଦିବାସୀ ସମାଜ ଓ ତାହାର ଭବିଷ୍ୟତ

ଓଡ଼ିଆ ସାହିତ୍ୟର ମଉଡ଼ମଣି ଗୋପୀନାଥ ମହାନ୍ତିଙ୍କର କିଛି କାଳଜୟୀ କୃତି ଇଂରାଜୀ ତଥା ବିଭିନ୍ନ ଭାରତୀୟ ଭାଷାରେ ଅନୁଦିନ ହେଲା ପରେ ସେ ଭାରତର ସାହିତ୍ୟିକ ଜନମାନସରେ, ଆଉକିଛି ପରିମାଣରେ ଆନ୍ତର୍ଜାତିକ କ୍ଷେତ୍ରରେ ଏକ ଅବିସ୍ମରଣୀୟ ସ୍ଥାନ ଅଧିକାର କରି ବସିଛନ୍ତି । ମୁଖ୍ୟତଃ ଆଦିବାସୀମାନଙ୍କର ସମସ୍ୟାବିଜଡ଼ିତ ବୈଚିତ୍ର୍ୟମୟ ଜୀବନଧାରଣ ଶୈଳୀର ଉପସ୍ଥାପନା ସମ୍ପର୍କରେ । ଏ କ୍ଷେତ୍ରରେ ନିଷ୍ଠାରେ ଆଉ ସମ୍ବେଦନଶୀଳତାରେ ସେ ଅଧିକାର କରି ବସିଛନ୍ତି ଏକ ମହତ୍ତର ଅପ୍ରତିଦ୍ୱନ୍ଦ୍ୱୀ ସ୍ଥାନ, ଯେଉଁ ସ୍ଥାନକୁ ପହଞ୍ଚିବା କେବଳ ଦୁରାରୋହ୍ୟ ନୁହେଁ, ଅଲଂଘ୍ୟ ମଧ୍ୟ ।

ଓଡ଼ିଶାର ଅଧିବାସୀମାନଙ୍କ ମଧ୍ୟରେ ପ୍ରତି ଚାରିଜଣରେ ଜଣେ ଆଦିବାସୀ, ଆଉ ସମଗ୍ର ଦେଶରେ ମଧ୍ୟପ୍ରଦେଶକୁ ବାଦ୍‌ଦେଲେ ସର୍ବାଧିକ ଆଦିବାସୀ ବାସ କରନ୍ତି ଓଡ଼ିଶାରେ । ମାତ୍ର ଓଡ଼ିଶାରେ ଆଦିବାସୀ ସବୁଠାରୁ ଅବହେଳିତ, ଯାହାଙ୍କର ଉନ୍ନୟନ ଲାଗି କିଛି ନିଜସ୍ୱ ଯୋଜନା ଓଡ଼ିଶା ସରକାର ପ୍ରଣୀତ କରିନାହାନ୍ତି, ଓଡ଼ିଶାର ପାରିପାର୍ଶ୍ୱିକ ସ୍ଥିତି ଆଧାରରେ । ଅନ୍ୟ ରାଜ୍ୟମାନଙ୍କରେ ଏଥିଲାଗି ପ୍ରଚେଷ୍ଟା ଅବ୍ୟାହତ ରହିଛି, ବିଶେଷତଃ ଆନ୍ଧ୍ରପ୍ରଦେଶରେ, 'ଗିରିଜନ ସମବାୟ କର୍ପୋରେସନ' ଜରିଆରେ ଆଦିବାସୀମାନଙ୍କୁ କ୍ରମୋନ୍ନତିର ଏକ ନୂତନ ଦିଗନ୍ତରେ ପହଞ୍ଚାଇବାକୁ ଯାଇ ଆଶାତୀତ ସଫଳତା ଅର୍ଜନ ହୋଇପାରିଛି । ମାତ୍ର ଓଡ଼ିଶାରେ କାହିଁକି, ସମଗ୍ରଦେଶରେ ଯଶସ୍ୱୀ ଗୋପୀନାଥ ମହାନ୍ତି ଥିଲେ ଏକ ବ୍ୟତିକ୍ରମ, ଯେ ଆଦିବାସୀମାନଙ୍କର ଜୀବନଶୈଳୀର ରସୋତ୍ତୀର୍ଣ୍ଣ ଦିଗକୁ ସାହିତ୍ୟରେ କେବଳ ଢାଳିବା ପାଇଁ ନୁହେଁ, ବାସ୍ତବିକତାର ପରିସରରେ ଆଦିବାସୀମାନଙ୍କୁ ଜୀବନ ଧାରଣର ଏକ ଉଚ୍ଚତର ସ୍ଥାନରେ ଅଧିଷ୍ଠାନ ନିମନ୍ତେ ପୁନର୍ବାର ପ୍ରୟାସ କରିବା କ୍ଷେତ୍ରରେ ସେ ଥିଲେ ଅନନ୍ୟ ଆଉ ଅତୁଳନୀୟ, ଯାହାଙ୍କର ଏହି ବିଭାମଣ୍ଡିତ ଦିଗଟି ରହିଯାଉଛି ଗୋପ୍ୟ ଆଉ ଅଜ୍ଞେୟ । ଏହାକୁ ଉଦ୍‌ଘାଟିତ କରିବାର ସମ୍ଭାବନା ଅତିକ୍ଷୀଣ ଆଉ ତାହାଙ୍କର ଆତ୍ମଜୀବନୀ ଏ କ୍ଷେତ୍ରରେ ରହିଯାଇଛି ଅପୂର୍ଣ୍ଣ, ଯାହା ଲିଖିତ ହୋଇଥିଲେ ଆଦିବାସୀ ବିକାଶ କ୍ଷେତ୍ରରେ କେବଳ ଏକ ନୂତନ ଦିଗ୍‌ବଳୟ

କେବଳ ସୃଷ୍ଟି କରିନଥାନ୍ତା, ତାହାଙ୍କର ଚରିତ୍ରର ଉଜ୍ଜଳତମ ଆଉ କୀର୍ତ୍ତିମୟ ଦିଗଟି ଉନ୍ମୋଚିତ ହୋଇଥାଆନ୍ତା ।

ଗୋପୀନାଥ ମହାନ୍ତିଙ୍କର ଚାକିରୀ କାଳ ଆରମ୍ଭ ହୁଏ ୧୦.୯.୧୯୩୮ରେ ଆଉ ସମାପ୍ତି ଘଟେ ୧.୪.୧୯୬୯ରେ । ଏହି ତିରିଶବର୍ଷର ଚାକିରୀ ଜୀବନ କାଳରେ ଅର୍ଦ୍ଧାଧିକ ସମୟ ପ୍ରାୟ ପନ୍ଦର ବର୍ଷର ଚାକିରୀ କାଳ ସେ ବିତାଇଛନ୍ତି ଆଦିବାସୀ ଅଧୁଷିତ ଅଞ୍ଚଳରେ ଅଥବା ଆଦିବାସୀ ସମ୍ପର୍କିତ ଯୋଜନାମାନ ପରିଚାଳିତ କରିବା କ୍ଷେତ୍ରରେ । ତାଙ୍କର ପ୍ରଜ୍ଞା ଓ ଅଭିଜ୍ଞାନରେ ମହିମାନ୍ୱିତ ଜୀବନର ଏହି ପର୍ଯ୍ୟାୟଟି ସୃଜନଶୀଳତାରେ ଏକ ବିସ୍ମୟ ସୃଷ୍ଟି କରି ସଞ୍ଚାଳିତ ହୋଇଥିଲା, ଯାହା ଅନ୍ୟ ସାହିତ୍ୟ ସ୍ରଷ୍ଟାଙ୍କର ଜୀବନରେ ଥିଲା କେବଳ ଦୁର୍ଲ୍ଲଭ୍ୟ ନୁହେଁ, ଅପ୍ରାପ୍ୟ ମଧ୍ୟ ।

ଗୋପୀବାବୁଙ୍କର ଆଦିବାସୀଙ୍କ ପ୍ରତି ଏହି ଭାବବିହ୍ୱଳ ଉନ୍ମୁଖତା, ତାହାଙ୍କୁ ୧୯୬୨ ସାଲର ଜୁଲାଇ ମାସରେ ନେଇ ପହୁଞ୍ଚାଇ ଦେଇଥିଲା ଭୁବନେଶ୍ୱରଠାରେ ଭାରତ ସରକାରଙ୍କର ପକ୍ଷରୁ ସୃଷ୍ଟି ହୋଇଥିବା ଅନୁସୂଚିତ ଜାତି ଓ ଜନଜାତିଙ୍କ ପାଇଁ ଉଦ୍ଦିଷ୍ଟ ସହକାରୀ କମିଶନର ପଦବୀରେ । ଏହି ପଦବୀରେ ୧୬ମାସ ଧରି ଅବସ୍ଥାପିତ ହେବାର ସ୍ମରଣୀୟ କାଳରେ, ତାଙ୍କର ଦୀର୍ଘକାଳ ବ୍ୟାପୀ ଅଭିଜ୍ଞତାକୁ ଆଧାର କରି ସେ ପରିକଳ୍ପିତ କରିଥିଲେ ଓଡ଼ିଶାର ନିଜସ୍ୱ ପରିସ୍ଥିତିର ଆଧାରରେ ଆଦିବାସୀଙ୍କର ଉନ୍ନୟନ ଲାଗି ଏକ ସ୍ୱତନ୍ତ୍ର ଅନୁଯୋଜନା, ଯାହାକୁ କାର୍ଯ୍ୟକାରୀ କରିବା ପାଇଁ ଭାରତ ସରକାରଙ୍କ ପକ୍ଷରୁ ଓଡ଼ିଶା ସରକାରଙ୍କର ନିକଟକୁ ପ୍ରେରିତ ହୋଇଥିଲା । ଏହା ଥିଲା ସର୍ବଭାରତୀୟସ୍ତରରେ ଏକ ଅଭିନବ ପ୍ରୟାସ ଯାହା ମାନବିକତାର ମୂଲ୍ୟବୋଧରେ ଅତ୍ୟନ୍ତ ମାର୍ମିକ ଓ ସମ୍ବେଦନଶୀଳ ଥିଲା ।

ଏହି ସଂଯୋଜନାଟି ପାଇଲା ପରେ ଓଡ଼ିଶାର ତତ୍କାଳୀନ ପାରଦର୍ଶୀ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ, ଭାରତ ସରକାରଙ୍କ ଅଧିନରୁ ଗୋପୀନାଥ ମହାନ୍ତିଙ୍କୁ ଆଣି ଓଡ଼ିଶା ସରକାରଙ୍କର ଅଧିନରେ ଅବସ୍ଥାପିତ କରିଥିଲେ ଏହି ସଂଯୋଜନାକୁ ରୂପାୟିତ କରିବା ପାଇଁ । ଏଥିପାଇଁ ଓଡ଼ିଶା ସରକାରଙ୍କର ଆଦିବାସୀ ଉନ୍ନୟନ ଯୋଜନାରେ ଏକ ସ୍ୱତନ୍ତ୍ର ଅଧିକାରୀ ପଦବୀ ସୃଷ୍ଟି ହୋଇଥିଲା, ଯେଉଁ ପଦବୀରେ ଗୋପୀବାବୁ ୨୨.୧୧.୧୯୬୩ରେ ଯୋଗଦାନ କରି ପ୍ରାୟ ସୁଦୀର୍ଘ ଛଅବର୍ଷର ଅନ୍ତରାଳରେ ଉକ୍ତ ପଦବୀରୁ ୧.୪.୧୯୬୯ରେ ଅବ୍ୟାହତି ନେଇ ସରକାରୀ କର୍ମରୁ ଅବସର ଗ୍ରହଣ କରିଥିଲେ । ଏହି ସମୟଟି ଥିଲା ତାହାଙ୍କ ଜୀବନର ମହାର୍ଘ ଅନୁଭୂତିର କାଳ, ଯେଉଁ ପର୍ଯ୍ୟାୟରେ ସେ ଆଦିବାସୀ ଉନ୍ନୟନ ଲାଗି ତାଙ୍କର ପରିକଳ୍ପିତ କ୍ରୟ ବିକ୍ରୟ ଓ ସୁଲଭ ଦୋକାନ ଯୋଜନାକୁ କାର୍ଯ୍ୟକାରୀ କରିବାର ଅପୂର୍ବ ସୁଯୋଗପ୍ରାପ୍ତ ହୋଇଥିଲେ । ଏହି ଯୋଜନା ମାଧ୍ୟମରେ ଓଡ଼ିଶାର କିଛି ନିର୍ଦ୍ଦିଷ୍ଟ ଅଞ୍ଚଳରେ ଆଦିବାସୀମାନଙ୍କୁ ପ୍ରଥମେ ସମସ୍ତ ଋଣଭାରରୁ ମୁକ୍ତ କରାଯାଇ, ତାହାରି ମାଧ୍ୟମରେ ଆଦିବାସୀର ସମସ୍ତ ଉତ୍ପାଦିତ କୃଷିଜାତ ଦ୍ରବ୍ୟ ଏବଂ ସଂଗୃହୀତ ବନଜାତ ସାମଗ୍ରୀ ସମୂହକୁ ଗ୍ରହଣ କରାଯାଇ ଏହାରି ପରିବର୍ତ୍ତେ ତାହାର ସମସ୍ତ ଆବଶ୍ୟକୀୟ ଖାଉଟି ଦ୍ରବ୍ୟ, ବସ୍ତ୍ର ଏପରିକି ପୂଜା ପାର୍ବଣରେ ବଳି ଦେବାପାଇଁ କୁକୁଡ଼ା ମଧ୍ୟ ଯୋଗାଇଦେବା ସହିତ ବହୁ ଆନୁଷଙ୍ଗିକ ସୁବିଧା ସୁଯୋଗମାନ ପ୍ରଦାନ କରାଯାଉଥିଲା ।





ଗୋପୀନାଥ ମହାନ୍ତିଙ୍କର ସରକାରୀ କର୍ମରୁ ଅବସର ନେବାର ସୁଦୀର୍ଘ ଦଶବର୍ଷ ପରେ ତାହାଙ୍କୁ ଭେଟିବାର ସୁଯୋଗ ମିଳିଥିଲା । ୧୯୭୯ ଓ ୧୯୮୦ ସାଲରେ ସମବାୟ ପ୍ରଶିକ୍ଷଣ ପ୍ରତିଷ୍ଠାନ ପକ୍ଷରୁ ଆୟୋଜିତ ଦୁଇଟି କର୍ମଶାଳାରେ । ଏହି କର୍ମଶାଳାମାନଙ୍କରେ ତାହାଙ୍କର ପ୍ରଦତ୍ତ ବକ୍ତବ୍ୟ ଉପରେ ପ୍ରଜାତନ୍ତ୍ରରେ ତିନିଗୋଟି ଲେଖା ପ୍ରକାଶିତ ହୋଇଥିଲା ତା ୨୯.୧୨.୧୯୯୧, ୨୨.୩.୧୯୯୨ ଏବଂ ୨୨.୮.୧୯୯୨ରେ । ଏହି ଲେଖାଟି ସେହି ପର୍ଯ୍ୟାୟର ଏକ ଅନୁକ୍ରମିକ ଉପସ୍ଥାପନା । ତାଙ୍କର ଅସମାପ୍ତ ବକ୍ତବ୍ୟ ଉପରେ ।

ଉକ୍ତ କର୍ମଶାଳାରେ ଗୋପୀବାବୁ ତାହାଙ୍କର ରୂପାୟିତ ଆଦିବାସୀ ଉନ୍ନୟନ ସଂଯୋଜନାର ବିସ୍ତୃତ ବିବରଣୀ ପ୍ରଦାନ କରିଥିଲେ ନିଜସ୍ୱ ରୋଚକ ଆଉ ଅନ୍ତରଙ୍ଗ ଶୈଳୀରେ । ଏହି ସମୟରେ ତାହାଙ୍କୁ ଏକ ପ୍ରଶ୍ନ ପଚରା ଯାଇଥିଲା ।

'ଏହି ସଂଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ କେଉଁ ଅଞ୍ଚଳ ସବୁ ଚିହ୍ନିତ ହୋଇଥିଲା ?' ଗୋପୀବାବୁ ଭାବ ଉଚ୍ଛ୍ୱାସଭରା କଣ୍ଠରେ କହିଲେ, ଗୋଟିଏ କଥା ସହଜେ ବାରିହୁଏ - 'ଅନୁନ୍ନତ' ଓ 'ଅତି ଅନୁନ୍ନତ' ଆଦିବାସୀ ହିଁ ଅଗ୍ରାଧିକାର ଓ ବିଶେଷ ଦୃଷ୍ଟି ପାଇବା ଦରକାର, କାରଣ ସେମାନେ ସବୁଠାରୁ ଅଧିକ ଶୋଷିତ ଥିଲେ ଆଉ ଅନ୍ଧକାର ସେଇଠି ଥିଲା ବେଶି । ତେଣୁ ଏହି ପର୍ଯ୍ୟାୟରେ ଫୁଲବାଣୀର ବେଲଘର, କୋରାପୁଟର ନିୟମଗିରି, କେନ୍ଦୁଝରର ବାଂଶପାଣି ଆଦି ନିଘଞ୍ଚ ଅଞ୍ଚଳ ଆଦି ସବୁ ଚିହ୍ନିତ ହୋଇଥିଲା । ପରେ ଏହି ସଂଯୋଜନାକୁ ଅନ୍ୟ ଅଞ୍ଚଳ ସମୂହକୁ ସମ୍ପ୍ରସାରିତ ହୋଇଥିଲା ।

ପ୍ରଶ୍ନଥିଲା, 'ଏହି ଦୁର୍ଗମ ପାର୍ବତ୍ୟ ଅଞ୍ଚଳ, ଯେଉଁଠାକୁ ପହଞ୍ଚିବା ଦୁଃସାଧ ଆଉ ଯେଉଁଠାରେ ହିଂସ୍ର ଜନ୍ତୁର ପ୍ରାବଲ୍ୟ ଅଧିକ, ସେଠାରେ ଯୋଜନାର କର୍ମୀମାନଙ୍କୁ କିପରି ଅବସ୍ଥାପିତ କରାଯାଉଥିଲା । ?

ଗୋପୀବାବୁଙ୍କର ଅଙ୍ଗେନିଭା ଅନୁଭୂତି ଥିଲା ପରିବ୍ୟାପ୍ତ । ସେ ଅତ୍ୟନ୍ତ ଉତ୍ସାହପ୍ରଦ ସ୍ୱରରେ କହି ଚାଲିଲେ 'ସବୁଠାରୁ ବଡ଼ ହେଲା କର୍ମୀଚୟନ' । ଏହା ଉପରେ ଯୋଜନାର ସାଫଲ୍ୟ ନିର୍ଭର କରୁଥିଲା । ତେଣୁ କର୍ମୀମାନଙ୍କୁ ବାଛିଲା ପରେ ସେମାନଙ୍କର ମାନସିକତାର ଏକ ପରିବର୍ତ୍ତନ ଆଣିବାକୁ ପ୍ରଚେଷ୍ଟା କରାଯାଉଥିଲା । ବିଭିନ୍ନ କର୍ମଶାଳା ଓ ପ୍ରଶିକ୍ଷଣ ପଦ୍ଧତି ମାଧ୍ୟମରେ, ତାଙ୍କର ମାନସିକତାକୁ ଆଦିବାସୀ କଲ୍ୟାଣ ଅଭିମୁଖୀ କେବଳ କରାଯାଉନଥିଲା, ସେମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଅନୁରୂପ ଧ୍ୟାନ ଦିଆଯାଉଥିଲା । ସେହି ଆଦିବାସୀ ଗ୍ରାମର ଉପରୋକ୍ତ ସ୍ଥାନରେ, ସେଠାରେ ପ୍ରଚଳିତ ଆଦିବାସୀ ଗୃହ ନିର୍ମାଣ ଶୈଳୀରେ ଘର ତିଆରି ହେଉଥିଲେ ମଧ୍ୟ ଏହି ଗୃହଥିଲା ଅଧିକ ସୁଦୃଢ଼, ପ୍ରଶସ୍ତ ଆଉ ଆଲୋକିତ । ଘରର ଆଗ ବାରଣ୍ଡା ଥିଲା ଓସାରିଆ ଯେଉଁଠାରେ ଆଦିବାସୀମାନେ ଆସି କର୍ମୀଙ୍କ ସହିତ ଆଲୋଚନା କରୁଥିଲେ । କର୍ମୀର ଘର ନିକଟରେ ଥିଲା କ୍ରୟବିକ୍ରୟ ଓ ସୁଲଭ ଦୋକାନ ଯୋଜନାର ଘରଟି, ଯେଉଁଠାରେ ଆଦିବାସୀ କୃଷିଜାତ ଦ୍ରବ୍ୟ, ଫଳପରିବା, ଆଉ ବନ୍ୟଜାତ ଦ୍ରବ୍ୟମାନ ସଂଗୃହୀତ ହେଉଥିଲା ।

କର୍ମୀମାନଙ୍କ ପାଖରେ ଗଚ୍ଛିତ ଥିଲା ଔଷଧ ସାଧାରଣ ରୋଗର ନିରାକରଣ ତଥା ପ୍ରତିକାର



ପାଇଁ । ହିଂସ୍ର ଜନ୍ତୁର ଆକ୍ରମଣରୁ ଆଦିବାସୀମାନଙ୍କୁ ରକ୍ଷା କରିବା ପାଇଁ ନିଘଞ୍ଚ ଶ୍ୱାପଦଶଙ୍କୁଳ ବିଚରଣ ଅଞ୍ଚଳରେ ବନ୍ଧୁକମାନ ଯୋଗାଇ ଦିଆଯାଉଥିଲା । ଦୁରାଗମ୍ୟ ରାସ୍ତାରେ ଘାଟି ଚଢ଼ି ଜିନିଷପତ୍ର ଧରି ଯାତାୟାତ ପାଇଁ ତଥା ଅରଣ୍ୟ ଇଲାକାରେ ଜିନିଷପତ୍ର ସଂଗ୍ରହ ଆଦି ଅନ୍ୟ କର୍ମରେ ସହାୟତା କରିବାପାଇଁ କର୍ମୀଙ୍କୁ ଭାରୁଆ ଯୋଗାଇ ଦିଆଯାଉଥିଲା, କାରଣ ଅଗମ୍ୟ ଅଞ୍ଚଳରେ ଏହା ଥିଲା ଏକ ଅପରିହାର୍ଯ୍ୟ ଆବଶ୍ୟକତା ।

ଗୋପୀବାବୁ ଦଣ୍ଡେ ନୀରବିଗଲେ । କଥାର ସୁଅ ରହିଯାଇଥିଲା ଅଛିଣ୍ଡା । ସେ ସଦା ହେଜି ହେଉଥିଲେ, ତାଙ୍କର ଅତ୍ୟନ୍ତ ପ୍ରିୟତମ ପରିବେଶ ନିୟମଗିରି ପାହାଡ଼ର ଢାଲୁ ଉପତ୍ୟକାକୁ, ଯେଉଁଠାରେ ପାହାଡ଼ ମଣ୍ଡି ହୋଇଯାଇଥିଲା ଅଜସ୍ର ଝରଣାରେ ଆହୁରି ତାହାରି ଧାରେ ଧାରେ ବାସ କରୁଥିଲେ ଡଂଗ୍ରିଆ କନ୍ଧ । ସମସ୍ତେ ନିଃସ୍ତବ୍ଧ ହୋଇ ବସି ରହିଥାନ୍ତି ଆଉ ଚାହିଁ ରହିଥାନ୍ତି ଗୋପୀବାବୁଙ୍କର ନିଥର ଆଉ ଦାଉ ଦାଉ ଝଟକୁଥିବା ଝଳିଲା ମୁହଁକୁ ।

ପରବର୍ତ୍ତୀ ପ୍ରଶ୍ନଟି ଥିଲା, ‘ଏ ସଂଯୋଜନାରେ ସାଫଲ୍ୟତା କେଉଁଠାରେ ଅଧିକ ମିଳିଥିଲା ?’

ପୁଣି ଗୋପୀବାବୁ ଛିଡ଼ା ହେଲେ । ତାଙ୍କର ମୁହଁଟି ଝଟକି ଉଠିଲା ଅପୂର୍ବ ଦୀପ୍ତିରେ । ଶୁଖି ହୋଇଯାଇଥିବା ଜଳପ୍ରପାତକୁ, ହଠାତ୍ ଅକସ୍ମାତ ଝରିପଡୁଥିବା ପ୍ରଚଣ୍ଡ ଜଳଧାରା ସଘୋଷେ ନିର୍ଘୋଷ କଲାପରି ତାଙ୍କର ମୁହଁରୁ ଝରିପଡ଼ିଲା ‘କଥା ସରିତ’ର ଜଳପ୍ରପାତ ।

‘ହଁ, ସେମାନେ ନିଶ ତଳେ ପିନ୍ଧିଥାନ୍ତି ନୋଲକ, କାନରେ ଫାସିଆ । ସେମାନେ ଥିଲେ ଏ ନିୟମଗିରି ପର୍ବତର ବାସିନ୍ଦା ‘ଡଂଗ୍ରିଆ କନ୍ଧ’ । ନିୟମଗିରିଯାକ ଦୁର୍ଭେଦ୍ୟ ବଣ, ବାଟ ନଥାଏ । ଡଂଗ୍ରିଆ କନ୍ଧ ମଦ ପିଏ, ମଇଁଷି ମାଉଁସ ଖାଏ, ନାଚେ, ଗୀତ ଗାଏ, ଅନ୍ୟ ଗାଁର ଧାଂଡ଼ୀ ସଙ୍ଗେ ନାଚିବ ବୋଲି ଏକା ରାତିକେ ଦଶ ମାଇଲ, ପନ୍ଦର ମାଇଲ ବି ଚାଲିଯାଏ । କେତେବେଳେ ଅନ୍ୟ କେଉଁ ଗାଁର ଧାଂଡ଼ୀ ସଙ୍ଗେ ନାଚିବ ବୋଲି । ଡମ୍ବ ଆଣି ଯୋଗାଇ ଦିଏ ମଦ ଆଉ ମାଉଁସ ପାଇଁ ମଇଁଷି । ପର୍ବତକୁ ହାତରେ ହାଣି ତାଡ଼ି, ହଳଦୀ, ମାଣ୍ଡିଆ, ସୁଆଁ, କାନ୍ଦୁଲ, ମକା, ବାଜ୍ରା ଲଗାଇବା । ପାହାଡ଼ୀ ଝରଣା ଧାରେ ଧାରେ କଦଳୀ, ସପୁରୀ, କମଳା ଆଦି ଫଳଗଛ ଲଗାଇବା, ଦିନ ଦିନ ରାତି ରାତି ପର୍ବତର କ୍ଷେତକୁ ଆବୋରି ରହିଥିବା ଆଉ ବେଳ ମିଳିଲେ ଗୀତ ନାଚ ସହିତ, ମହୁଲ ଆଉ ସଲପ ମଦ ବର୍ଷଯାକ ପୂଣ୍ୟପର୍ବ ମଧ୍ୟରେ ସମୟ ବିତିଯାଏ । ତାହାରି ଭିତରେ ପରିବାରରେ ଗାଆଁରେ ବାନ୍ଧି ହୋଇ ରହିଥିଲା, ସାମାଜିକ ଘରକରଣାର ସୁଖଦୁଃଖ ।

ଉତ୍ପାଦନ କରିବା, ବିଶେଷତଃ ଫଳଚାଷ କରିବା ସେମାନଙ୍କୁ ଆନନ୍ଦ ଦେଉଥିଲା । ବାହାର ଦୁନିଆ ସାଙ୍ଗେ ସେମାନଙ୍କର ସମ୍ପର୍କ ଚାଲେ ଡମ୍ବମାନଙ୍କ ଜରିଆରେ, ଆଉ ସେମାନେ ଡମ୍ବର ଲେଉଟିଆ ପଟାଳି ହୋଇ ରହିଥିଲେ । ବୋତଲେ ମଦପିଆଇ ଦେଲେ ବର୍ଷଯାକ ଭୋଗଦଖଲ କରିବାକୁ ଗୋଟିଏ କମଳା ଗଛ କି ଚାରିଟା ପଣସ ଗଛ ମିଳି ଯାଉଥିଲା । କୋଡ଼ିଏ ଟଙ୍କା ଦେଲେ ଏକ ଏକର ସପୁରୀ କ୍ଷେତର ସବୁତକ ସପୁରୀ ନେଇଯାଏ ।

ଯେ ତାକୁ ଲୁଟୁ ଯେମିତି, ସେମାନେ ସେଠି ଥିଲେ । ଭାବୁଥିଲେ ସେ ପାହାଡ଼ଖଣ୍ଡିକ ଆଉ କାହାରି ନୁହେଁ । ଡମ୍ବର ଦାଉ ବେଳକୁ ବେଳ ବଢ଼ିଲା । ଡକାଡକି ହୋଇ ପଦାରୁ ଆସିଲେ





ଆହୁରି ଡମ୍ବ ବେପାରୀ । ଗଛରୁ ଫଳ କାଟିନେଲେ, ପାରିନେଲେ, କ୍ଷେତରୁ ତାଡ଼ିନେଲେ ହଳଦୀ । କନ୍ଧ ପ୍ରତିବାଦ କଲା, ମାତ୍ର ନିରୁପାୟ । ଶୋଷଣର ଜାଲରେ ଛନ୍ଦି ହୋଇ ଯାଇଥିଲା ।'

ଅନର୍ଗଳ ଆଉ ଅଣନିଶ୍ୱାସୀ ହୋଇ ବଖାଣି ଯାଇଥିବା ଗୋପୀବାବୁଙ୍କ କଣ୍ଠ ସ୍ଥିର ହୋଇଗଲା । ସ୍ତବ୍ଧ ଶ୍ରୋତାମଣ୍ଡଳୀ ଚାହିଁ ରହିଛନ୍ତି ପରବର୍ତ୍ତୀ ଉଦ୍‌ଘୋଷଣାର ନିର୍ଝର ପାଇଁ । ହଠାତ୍ କାହାରି କଣ୍ଠରୁ ଗୁମୁରି ଉଠିଲା ତା'ପରେ ।

'ହଁ, ତାହାପରେ ।'

ଗୋପୀବାବୁଙ୍କର କଣ୍ଠର ସ୍ୱର ଚଞ୍ଚଳ ହେଲା ଆଉ ଖିଲି ଖିଲି ହୋଇ ଝରି ପଡ଼ିଲା, ଅଙ୍ଗେ ନିଭାଇଥିବା କାହାଣୀର ଗୀତି ନିର୍ଝର କୁଳୁକୁଳୁ ନିନାଦ କରି ।

'ହଁ,ତାହାପରେ ଆସିଲେ ସରକାରୀ (ଗୋପୀବାବୁଙ୍କ ପରିକଳ୍ପିତ) ସଂଯୋଜନାର କର୍ମୀମାନେ । ସେମାନେ କନ୍ଧକୁ ବିନାସୁଧରେ ଋଣ ଦେଲେ, ଡମ୍ବ ବେପାରୀଙ୍କ ଋଣ ସୁଝାଇଲେ । କ୍ଷେତ, ତୋଟା, ଫଳଗଛ ସବୁ ବନ୍ଧାରୁ ମୁକୁଳାଇଲେ । ପେଣ୍ଠ ଖୋଲି କନ୍ଧର ସବୁ ଆବଶ୍ୟକ ଦ୍ରବ୍ୟ ତାକୁ ସୁଲଭ ମୂଲ୍ୟରେ ଯୋଗାଇଲେ, କନ୍ଧର ଜିନିଷ ସବୁ ବଜାର ଦରରେ କିଣିଲେ । ଡମ୍ବ ବେପାରୀ ମଧ ବଜାର ଦରରେ କିଣିବାକୁ ବାଧ୍ୟ ହେଲା । କନ୍ଧ ଶହ ଶହ ଟଙ୍କା ପାଇଲା । ଜୁଲୁମ ବନ୍ଦ ହେଲା । କନ୍ଧ ଅଧିକ ଟଙ୍କା ପାଇଲା, ଆମଠୁ ଧନୀ ହେଲା । କନ୍ଧ ପିଲା ପାଠ ପଢ଼ିଲେ । ବାହାର ଦୁନିଆ ସହିତ ସମ୍ପର୍କ ରଖିଲେ । ପାହାଡ଼ ଉପରକୁ ଖଣ୍ଡେ ବାଟ ଫିଟିଗଲା, ଗାଡ଼ି ଯିବା ସଡ଼କ ।' ଗୋପୀବାବୁଙ୍କର ମୁହଁଟି ଝଲସି ଉଠିଥିଲା ପରିତୃପ୍ତ ଉଲ୍ଲାସର ଉତ୍‌ଫୁଲ୍ଲିତ ଦୀପ୍ତିରେ । ହଁ, ଏ ଥିଲା ତାଙ୍କର ନିଜସ୍ୱ ପରିକଳ୍ପନା ମାଧ୍ୟମରେ ସଫଳତାର ଏକ ମାର୍ମିକ ଚିତ୍ର !

ହଠାତ୍ ଥମିଗଲେ ଗୋପୀବାବୁ । ନିଜର ଚୌକିରେ କିଛି ସମୟ ଲାଗି ବସିରହିଛନ୍ତି । ଚାରିଆଡ଼େ ସ୍ଥାଣୁଭେଦୀ ନୀରବତା । ନିଠେଇ ଚାହିଁଲେ ଗୋପୀବାବୁ ଶ୍ରୋତାମଣ୍ଡଳୀଙ୍କର ଉଦ୍‌ଗ୍ରୀବ ମୁହଁକୁ । କାହାଣୀ ଶୁଣିବାର ନିଶାରେ ପ୍ରଲୁବ୍ଧ ସଭିଏଁ । ସେମାନେ ଚାହିଁ ରହିଛନ୍ତି ଘଟଣା ପ୍ରବାହର ପରବର୍ତ୍ତୀ ସୁଅରେ ଭାସି ଯିବାପାଇଁ । ସମସ୍ତଙ୍କର ଆଖିପତାରେ ପ୍ରଶ୍ନବାଚୀର ଚିହ୍ନ ହାବୁକା ମାରୁଛି । ଗୋପୀବାବୁ ଟିକିଏ ନୀରବରେ ବସି ଯାଇଛନ୍ତି କାହାଣୀର ପରବର୍ତ୍ତୀ ଖିଅକୁ ଯୋଖିବା ପାଇଁ ।

ନିର୍ବାକ୍ କଣ୍ଠ ଏଥର ସବାକ ହେଲା, ହେଲେ ଏଥିରେ ନଥିଲା ପୂର୍ବ ବକ୍ତବ୍ୟର ଚଳଚଞ୍ଚଳତା । ଏଥିରେ ଲାଖି ରହିଥିଲା ବିଷନ୍ନତାର ଛିଟା, ଅବସାଦର ଛାୟା ଆବରିତ କରି ।

'ହଁ, ଏଥିଲା ୧୯୬୯ ସାଲ୍‌ବେଳକୁ ମୁଁ ଚାକିରୀରୁ ଅବସର ନେବା ସମୟରେ ନିୟମଗିରି ଆଦି ଆଦିବାସୀ ଅଞ୍ଚଳର ସ୍ଥିତି । ହେଲେ ଦୃଶ୍ୟପଟ୍ଟ କିଭଳି ତ୍ୱରିତ ଗତିରେ ବଦଳିଯାଉଛି, ତାହାକୁ କଳନା କରି ହେଉନାହିଁ । ଓଡ଼ିଶାର ବହୁ ଅଞ୍ଚଳରେ ଆଦିବାସୀର ଜମି ଉପରେ ମାଲିକାନା ଲିପିବଦ୍ଧ ହୋଇନାହିଁ । ସେଥିପାଇଁ, ତାର ପରବାୟ ନଥିଲା । ସେ ଜାଣିଥିଲା - ଦୂର ଦିଗ୍‌ବଳୟ ପର୍ଯ୍ୟନ୍ତ ଆଖି ପାଉଥିବା ଜମି ସବୁ ତାର - ଆଦିବାସୀ ସମାଜର ।

ହେଲେ ଓଡ଼ିଶାର ବହୁ ଆଦିବାସୀଅଧ୍ୟୁଷିତ ପରିବ୍ୟାପ୍ତ ଅଞ୍ଚଳରେ ରହିଛି ଅମାପ ଖଣିଜ ସମ୍ପଦ । ବହୁ ଜଙ୍ଗଲ ଦ୍ରୁତଗତିରେ ଧ୍ୱଂସ ହେବା ସତ୍ତ୍ୱେ ଓଡ଼ିଶାରେ ବନ୍ୟ ସମ୍ପଦ ଅନ୍ୟ ରାଜ୍ୟମାନଙ୍କଠାରୁ

ସମୃଦ୍ଧ । ତାର ପାହାଡ଼ିଆ ଜଳବାୟୁ ଫଳଚାଷ ଓ ଅନ୍ୟ ବ୍ୟବସାୟିକ ଚାଷ ପାଇଁ ଉପଯୋଗୀ, ତେଣୁ ଏହି ସବୁ ଅଞ୍ଚଳରେ ବଡ଼ ବଡ଼ ଚକଡ଼ା ବିଭିନ୍ନ ଫାର୍ମମାନଙ୍କୁ ଅଥବା ଖଣିମାଲିକ ଓ କାରଖାନାର ସତ୍ତ୍ୱାଧିକାରୀମାନଙ୍କୁ ଲିଜ୍ ଅଥିବା ବିକ୍ରୟ ସୂତ୍ରରେ ପ୍ରଦାନ କରାଯାଉଛି, ଅଧିକାଂଶ ଜାଗାରେ ପରମ୍ପରାଗତ ଆଦିବାସୀ ଚାଷଜମିକୁ ଆଉ ତାର ପ୍ରଚଳିତ ସତ୍ତ୍ୱକୁ ଉଚ୍ଛେଦ କରି । ଏଣେ ଆଇନର ଫାଙ୍କ ଦେଇ ବହୁ ଚାଷଜମି ଚାଲିଯାଉଛି ଅନ୍ୟ ଅଣ ଆଦିବାସୀମାନଙ୍କ ହାତକୁ । ଏଣୁ ଏହିଭଳି ପରିସ୍ଥିତିରେ ଆଦିବାସୀମାନଙ୍କର ବିଷୟରେ ଚିନ୍ତା କଲେ ଶଙ୍କାକୁଳ ହେବାକୁ ପଡୁଛି', ଗୋପୀବାବୁ ବସିଗଲେ ଅବସାଦଗ୍ରସ୍ତ ଚିତ୍ତରେ, ଅବସନ୍ନ ମୁହଁରେ କ୍ଳାନ୍ତିର ଚିହ୍ନ ସୁସ୍ପଷ୍ଟ ।

ପରବର୍ତ୍ତୀ ପ୍ରଶ୍ନଟି ଥିଲା ଏହିଭଳି ଭାବରେ -

'ଏହିପରି ଅବସ୍ଥାରେ ଆଗାମୀ ଭବିଷ୍ୟତରେ ଆଦିବାସୀ ସମାଜର ସ୍ଥିତିକୁ କିପରି ଆକଳନ କରାଯାଇ ପାରିବ ।'

ଗୋପୀବାବୁ ଟିକିଏ ହତଚକିତ ହେଲେ ପ୍ରଶ୍ନଟିର ଝଟ୍‌କାରେ । ଟିକିଏ ବିବ୍ରତ ମୁହଁରେ ତାଙ୍କର ଛାପି ହୋଇରହିଥିଲା ପ୍ରଚଣ୍ଡ ଉଦ୍‌ବେଳନ, ହୃଦୟର ଗହ୍ୱରକୁ ମନ୍ଥିତ କରିଦେଇ । ତାଙ୍କର ଅନ୍ତରରୁ ଦୁହିଁ ହୋଇଉଠିଲା ଗୋଟିଏ ଦୀର୍ଘଶ୍ୱାସ । ଗୋପୀବାବୁ ଛିଡ଼ାହେଲେ ଆଉ ଆରମ୍ଭ କଲେ ତାଙ୍କର ବକ୍ତବ୍ୟର ନିର୍ଗଳ ଧାରାପ୍ରବାହ । ମାତ୍ର ତାହାଥିଲା ବହୁଦିନ ଧରି ସୁପ୍ତ ରହିଥିବା ଆଗ୍ନେୟଗିରିଟି, ପ୍ରଚଣ୍ଡ ବିସ୍ଫୋରଣରେ ହଠାତ୍ ସକ୍ରିୟ ହେବାପରେ, ସେଥିରୁ ବହି ଚାଲିଥିବା ଉତ୍ତପ୍ତ ତରଳ ଲାଭାର ବହମାନ ଜ୍ୱଳନ୍ତ ସ୍ରୋତର ଉଦ୍‌ଗୀରଣ ପରି ।

ହଁ ସେ ବକ୍ତବ୍ୟ ଥିଲା ଅଗ୍ନିଗର୍ଭା ।

'ବନ୍ଧୁଗଣ ! ମୁଁ ଜାଣେନା ସୁଦୂର ଭବିଷ୍ୟତରେ ସେମାନଙ୍କର ପରିବର୍ତ୍ତିତ ଜୀବନର ଧାରାକୁ କିପରି ଆକଳନ କରାଯାଇ ପାରିବ । ମାତ୍ର ମୁଁ ବହୁ ସମୟରେ ଚିନ୍ତା କରେ ମୋର ପ୍ରାଣରୁ ବଳି ପ୍ରିୟ ନିୟମଗିରିରେ ବାସ କରୁଥିବା ଆଦିବାସୀଙ୍କର ଭବିଷ୍ୟତ ଜୀବନର ରୂପରେଖ । ଏହିପରି ଚିନ୍ତା କରୁ କରୁ ଦିନେ ଦେଖିଲି ସୁଦୂର ଭବିଷ୍ୟତରେ ପଚାଶ ବର୍ଷ ଆଗକାର ଦୃଶ୍ୟ କିଞ୍ଚିତ ସ୍ୱପ୍ନରେ - କିଞ୍ଚିତ ଅବଚେତନର ଚିତ୍ତରେ । ତାହାକୁ ନେଇ ଲିପିବଦ୍ଧ କରିଥିଲି ଘଟଣାକ୍ରମର ଏକ କାହାଣୀ ଧାରା । ଗଳ୍ପର ନାମ ଥିଲା - 'ଅଲୋଡ଼ା' । ତାହା ୧୯୭୮ ସାଲର ଶାରଦୀୟ ପୂଜା ସଂଖ୍ୟା 'ସମାବେଶ'ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ସେ କାହାଣୀରେ ଲେଖିଥିଲି, ପ୍ରାୟ ପଚାଶ ବର୍ଷ ଆଗକୁ (ପ୍ରାୟ ୨୦୩୦ ସାଲ ବେଳକୁ) ନିୟମଗିରି ପାହାଡ଼ରୁ ଆଦିବାସୀମାନେ କେବଳ ହଜିଯାଇନଥିବେ - ବିସ୍ମୃତ ହୋଇ ଯାଇଥିବେ । ସେହି ଗଳ୍ପର ଆରମ୍ଭ ମୁଁ ଏହିପରି କରିଥିଲି । (ସ୍ମୃତିରୁ ଉଜାଣି ହୋଇ ବହି ଆସୁଥିଲା ଗଳ୍ପର ବାକ୍ୟାଂଶ ଗୁଡ଼ିକ ।)

'ଜଣାନାହିଁ ସେମାନେ କୁଆଡ଼େ ଗଲେ ।

ଥିଲେ ବୋଲି ବି ପଦ ପଡ଼ନ୍ତା ନାହିଁ, ଯଦି ନ କହନ୍ତା ବିଷମକଟକ ମହାନଗରୀର 'ମାଳିମା' ଦେଉଳର ବୁଢ଼ାପଣ୍ଡା । ବୟସ ଅଶୀ ଟପିଲାଣି । ତଥାପି ଟାଣ ଅଛି ସାଧୁ ପଣ୍ଡା । ପାକୁଆ ପାଟି





ହସରେ ଫାଟିଯାଏ, କହେ ତାଙ୍କ ପାଟିରେ 'ଧ' ଟା 'ଦ' ହୋଇଯାଏ, ମତେ ଡାକୁଥିଲେ ମଦୁଆ ପଣ୍ଡା ।'

"ମୋର ଚିନ୍ତାର କ୍ରମାନ୍ୱୟରେ ଏହି 'ଅଲୋଡ଼ା'ଗଳ୍ପରେ ଆଗାମୀ ସେହି ପଚାଶ ବର୍ଷର ଘଟଣାପ୍ରବାହ ଏହିପରି ଥିଲା । ପ୍ରଚୁର ଫଳ ଆଉ ଶସ୍ୟ ଉତ୍ପାଦନରେ ଫାଟି ପଡୁଥିବା ଝରଣା ଆବରିତ ନିୟମଗିରି ପାହାଡ଼ରେ ବାହାରିଲା - ତମ୍ବା ଆଉ କ୍ରୋମିୟମ୍, ଦୁଷ୍ପ୍ରାପ୍ୟ ଧାତୁ ଯୋଡ଼ିଏ । ସୁଖ ଶାନ୍ତିରେ ଜୀବନ ବିତାଉଥିବା ସେହି ଡଂଗ୍ରିଆ କନ୍ଧଙ୍କର ଫଳପ୍ରସୂ ଅଞ୍ଚଳଟିକୁ ଖଣି ଖୋଳିବା ପାଇଁ ପଟ୍ଟା ଦିଆଗଲା । କନ୍ଧମାନେ ଓଜର, ଆପତ୍ତି କଲେ, ଶୋକ କଲେ; ହେଲେ କିଏ ଶୁଣୁଛି ତାଙ୍କର କଥା । ଖଣିମାନ ଲମ୍ବିଗଲା । କୁଆଡ଼େ ଉଭେଇ ଗଲା ଫଳଚାଷ, ତୋଟା, କ୍ଷେତବାଡ଼ି, ଗାଁଗଣ୍ଡା । ଡଂଗ୍ରିଆ କନ୍ଧ ସବୁ ଛତର ଛାଉଳ ହୋଇଗଲେ । କିଛି ଅଳ୍ପ କନ୍ଧ ପାହାଡ଼ ତଳ ଟାଙ୍ଗର ଭୂଇଁରେ ରହିଲେ, ବାକି କୁଲିକାମ କରିବେ ବୋଲି ଦୂରକୁ ବାହାରିଗଲେ । ଛାଇଗଲା ପାହାଡ଼ଯାକ ଖଣି ଖାଦାନ । ପାହାଡ଼ ତଳର ଢାଲୁ ଅଞ୍ଚଳ କରେ କରେ ବିଷମକଟକ ଆଉ ମୁନିଗୁଡ଼ା ଆବରିତ କରି କଳକାରଖାନା ଆଉ ଫ୍ୟାକ୍ଟ୍ରୀମାନ ଲମ୍ବିଗଲା । ପାଞ୍ଚଲକ୍ଷ ଜନବସତି ଘେନି ବିଷମ କଟକ ମହାନଗରୀ, ଯହିଁରେ ଓଡ଼ିଆ ମାତ୍ର ପଚାଶ ହଜାର ଆଉ ଡଂଗ୍ରିଆ କନ୍ଧ ତହିଁ ମିଳିବା ଦୁଃସ୍ୱପ୍ନ ପ୍ରାୟ ।

ଧାଡ଼ିଧାଡ଼ି ଫ୍ୟାକ୍ଟରୀର ଉଚ୍ଚ ଚିମିନିବାଟେ ଘଡ଼ିବାଣ ଫୁଟିଲାପରି ନିଆଁ ଝୁଲ ଛାଟି ହେଉଥାଏ । ଗରମରେ ଛଟପଟ ଲାଗେ । ପବନରେ ଧୂଳି ଧୂଆଁର ବହଳ ପୁଟ । ନିଃଶ୍ୱାସ ନେବାକୁ ପବନ ଓଜନ ଲାଗେ । ପର୍ବତଟା ଦିଶେ ଅଲକ୍ଷଣା, ହତଶ୍ରୀକ । ସ୍ଥାନେ ସ୍ଥାନେ ଖଣି ଖାଦାନର ବିରାଟ ହାଉଁ । ନାଲିଚା ଘା' ପରି ।"

'ଅଲୋଡ଼ା' ଗଳ୍ପର କାହାଣୀ ପ୍ରବାହକୁ ବର୍ଣ୍ଣନା କରି ଚାଲିଛନ୍ତି ଗୋପୀବାବୁ ଲୋମହର୍ଷକ, ମାତ୍ର ଅତ୍ୟନ୍ତ ଚିତ୍ତାକର୍ଷକ ଶୈଳୀରେ । କାହାଣୀର ଅନ୍ତିମ ପର୍ଯ୍ୟାୟରେ ପହଞ୍ଚିଛନ୍ତି ଗୋପୀବାବୁ । କାହାଣୀର ଶେଷ ପଂକ୍ତି ସବୁ ଏହିପରି ଥିଲା-

'ନିୟମଗିରି ନାଲିମାଟି ତଳୁ ହଠାତ୍ ଆବିଷ୍କୃତ ହେଲା ପରମାଣୁ ଶକ୍ତି ଉତ୍ପାଦନକାରୀ ବିସ୍ଫୋରକ ଦ୍ରବ୍ୟ ସବୁ । ତେଣୁ ଅସମ୍ଭବଭାବେ ବଢ଼ିଗଲା ଶିଳ୍ପର କାରଖାନା ପରିବ୍ୟାପ୍ତ ଅଞ୍ଚଳରେ ।

ତା'ପରେ ସତେ କି ନିଜର ଶେଷ ଆଙ୍ଗୁଳ ପରି ଯେଉଁ ପୁରୁଣା ବନ୍ଧ ଥିଲା, ତା' ହଠାତ୍ ଭୁଷୁଡ଼ି ପଡ଼ିଲା । ଯାନ୍ତ୍ରିକ ସଭ୍ୟତା ମାଡ଼ି ଆସି ଘୋଟିଗଲା । ସତେ କି ପ୍ରଳୟ, ଦି'ଦିନରେ ବିଚିତ୍ର ପରିବର୍ତ୍ତନ ।

ସେ ଅଞ୍ଚଳ ଆଉ ଚିହ୍ନି ହେଲାନାହିଁ ।'

ଗୋପୀବାବୁ ନିଜସ୍ୱ ଗଳ୍ପର ବ୍ୟାଖ୍ୟାନ ଏହିଠାରେ ଶେଷକଲେ, ହେଲେ ଲମ୍ବିଯାଇଥିଲା ତାଙ୍କର ବକ୍ତବ୍ୟର ଧାରା, ସ୍ରୋତସ୍ୱିନୀର ଅନୁକ୍ରମିକ ପ୍ରବାହ ପରି ।

'ଏ ଥିଲା ଅଲୋଡ଼ା ଗଳ୍ପର, ଶେଷ ବାକ୍ୟାଂଶ ଦୁଇଟି । ଛାଇ ଛାଇଆ ମୋର ଚିନ୍ତା ରାଜ୍ୟରେ ଏହିପରି ବାରମ୍ବାର ସ୍ୱପ୍ନର ଝଲକଗୁଡ଼ିକ ଉକୁଟି ଉଠେ । ନିକଟରେ ଦେଖିଥିବା କେଉଁ ଆଦିବାସୀ ଅଞ୍ଚଳର ଦୃଶ୍ୟଟି ମୋର ମନରେ ଝଟକି ଉଠିଥିଲା । ସେ ଅଞ୍ଚଳଟି ଥିଲା ନିୟମଗିରି ପରି ଅଜସ୍ର ଝରଣାମଣ୍ଡିତ ଫଳପ୍ରସୂ ଦେଶ । ହଠାତ୍ ସେଠାରେ କେଉଁ ଦୁଃଷ୍ପ୍ରାପ୍ୟ ଖଣିର ସନ୍ଧାନ ମିଳିଲା । ବିଶ୍ୱର

ଦୂର ଦୂରାନ୍ତରରୁ ଆସି ଜୁଟିଗଲେ ମହୁମାଛି ପରି ଶିଳ୍ପୋଦ୍ୟୋଗୀ ଦଳ । ପାହାଡ଼ର ସାରା ପରିବ୍ୟାପ୍ତ ଅଞ୍ଚଳରେ ଖଣି ଖାଦାନମାନ ଖୋଳାଗଲା, ଆଉ ଉପତ୍ୟକା ଆବରିତ କରି କାରଖାନା ସମୂହ ।

ପାହାଡ଼ରୁ ଝରୁଥିବା ଅଜସ୍ର ଝରଣାର ଜଳ ନୀଳ ପାଲଟିଗଲା କେଉଁ ଉଗ୍ର ବିଷର ହଳାହଳକୁ ଶୋଷିନେଇ । ବହୁ ଆଦିବାସୀ ହଜିଗଲେ । ବାକି କାଁ ଭାଁ ଥିଲେ ଏଠି ସେଠି ଅଳ୍ପ ଆଦିବାସୀ । ହେଲେ ସେ ଯୁଗରେ ଯେଉଁ ଜୁଆନ ଟୋକା -ଧାଂଡ଼ା ଦଳ, ଅଣ୍ଟାରେ ବଇଁଶୀ ଖୋସି ଏକ ରାତିରେ ଦଶରୁ ପନ୍ଦର ମାଇଲ ବାଟ ଧାଇଁ ଯାଉଥିଲେ, କେଉଁ ଦୂର ଗାଁ ଧାଂଡ଼ୀଦଳ ସଙ୍ଗେ ନାଚିବେ ବୋଲି ଆଉ ପ୍ରକୃତି ସହିତ ଜୀବନକୁ ଅବିରତ ଉପଭୋଗ କରି ଚାଲିଥିଲେ, ସେମାନେ ଏବେ ନେଳି କିମ୍ବା ଖାଲି ଖାକି ହାପପ୍ୟାଣ୍ଟ ପିନ୍ଧି ଖରାତରାରେ ଫୁଙ୍ଗୁଳା ଦେହରେ ଖଟି ଚାଲିଛନ୍ତି ଟ୍ରକମାନଙ୍କରେ ହେମାଲ ହୋଇ ଅଥବା ଟିଣ ଛୁଆଁ ଫ୍ୟାକ୍ଟରୀ ଘରେ ସିଝି ସିଝି ଝାଳନାଳ ହୋଇ ଗତର ଖଟେଇ ଚାଲିଛନ୍ତି ଜୀବନର ସମସ୍ତ ରସବୋଧକୁ ନିଃଶେଷିତ କରିଦେଇ ।' ଗୋପୀବାବୁ ତାଙ୍କର ବକ୍ତବ୍ୟ ଶେଷ କଲେ ।

ହେଲେ, ଏ କ'ଣ ଥିଲା ମାଳିକାର ବଚନିକାରେ ଆଗତ ଭବିଷ୍ୟତର ସାଙ୍କେତିକ ବାଣୀ ଅଥବା ଓରୱେଲଙ୍କ ବର୍ଣ୍ଣିତ ଦୂର ଭବିତବ୍ୟ ଘଟଣା ପ୍ରବାହର ଦୁଃଖଦ ବ୍ୟାଖ୍ୟାନ ।

ବ୍ୟଥା ବିଜଡ଼ିତ କଣ୍ଠରେ ତାଙ୍କର ବକ୍ତବ୍ୟ ଶେଷକରି ଥକା ମାରି ବସିଗଲେ ଗୋପୀବାବୁ । ଏକ ଅସହାୟବୋଧର ବିଷନ୍ନତା ତାଙ୍କୁ ଯେପରି ଆଚ୍ଛନ୍ନ କରି ରଖିଥିଲା । ସାରାଜୀବନ ଧରି ଯେଉଁ ଆଦିବାସୀ ସମାଜର ଭାଗ୍ୟ ସହିତ ନିଜର ଚେତନା ଓ କର୍ମଧାରାକୁ ନିବିଡ଼ଭାବେ ସମ୍ପର୍କିତ କରି ରଖିଥିଲେ, ସେମାନଙ୍କର ମର୍ମନ୍ତୁଦ ଦୟନୀୟ ସ୍ଥିତି ଆକଳନ କରିବା କେଡ଼େ ହୃଦୟ ବିଦାରକ ହୋଇପଡ଼ିଥିଲା ସତେ ?

ଶେଷ ପ୍ରଶ୍ନଟି ହେଲା 'ଏହାର କ'ଣ ପ୍ରତିକାର ନାହିଁ ?'

ହେଲେ କର୍ମଶାଳାର ସମୟ ଅତିକ୍ରାନ୍ତ ହୋଇ ସାରିଥିଲା । ବିଦ୍ୟାଳୟ ସମାପ୍ତିର ଶେଷ ଘଣ୍ଟା ଯେପରି ବାଜି ଉଠି ସାରିଥିଲା ।

କର୍ମଶାଳା ସାରି ବାହୁଡ଼ିବାର ବେଳ । ସମସ୍ତଙ୍କ ଠାରୁ ବିଦାୟନେବା ଭଙ୍ଗୀରେ ଛିଡ଼ା ହୋଇଥିଲେ ଗୋପୀନାଥ ମହାନ୍ତି । ସେତେବେଳକୁ ତାଙ୍କର ବିଷାଦଗ୍ରସ୍ତ ମୁହଁରେ ଖେଳି ଉଠିଥିଲା ସ୍ମିତହାସ୍ୟ । ତୋଫାଜହ୍ନର ଝଲସା ପରି ଉଦ୍‌ଭାସିତ ହୋଇ ଉଠିଥିଲା ତାଙ୍କର ମୁଖମଣ୍ଡଳ । ବିଦାୟର ସେହି ଅବିସ୍ମରଣୀୟ ମୁହୂର୍ତ୍ତରେ ତାଙ୍କର କଣ୍ଠରୁ ସ୍ୱତଃସ୍ଫୂର୍ତ୍ତ ଭାବେ ଉଚ୍ଚାରିତ ହେଲା କାଳଜୟୀ ବକ୍ତବ୍ୟ, ଶେଷ ପ୍ରଶ୍ନଟିର ଉତ୍ତର ବହନ କରି ।

"ନିଶ୍ଚୟ ପ୍ରତିକାରର ସମ୍ଭାବନା ଅଛି । ପ୍ରକୃତରେ ପ୍ରତିକାରର ଉପାୟ ହେଲା ନିଜେ ଦୃଢ଼ ହେବା । ନିଜେ ନିଜର ଭୂଇଁରେ ଦମ୍ଭ ହୋଇ ଛିଡ଼ା ହୋଇ ରହିବା । ଆଉ ଯେପରି ନିଜର ଚେର ଉପୁଡ଼ି ନଯାଏ, ସେହିଭଳି ଗଭୀରକୁ ଯାଇ ନିଜର ସ୍ଥିତିକୁ ସୁଦୃଢ଼ କରିବା ସହିତ ପରିସ୍ଥିତିର ସମ୍ମୁଖୀନ ହେବା ।"

ଏଥିଲା ବିଦାୟର ବେଳାରେ, ସେ ଦିନର କର୍ମଶାଳାରେ ପ୍ରଦତ୍ତ ଗୋପୀବାବୁ ମହାନ୍ତିଙ୍କର ଅନ୍ତିମ





ବକ୍ତବ୍ୟ, ଯାହା ଦିଗଦ୍ରଷ୍ଟାଙ୍କର ମାର୍ଗଦର୍ଶନର ଉଦାତ୍ତ ଉଚ୍ଚାର ପରି ଥିଲା ଆପ୍ତ ବାକ୍ୟର ସମୁଚ୍ଚ ସମାହାର, ଯହିଁରେ ସଞ୍ଚରି ଯାଇଥିଲା ନିରାକରଣ ମନ୍ତ୍ରଧ୍ୱନିର ସ୍ୱସ୍ତିବାଚନ ।

('ସମଦୃଷ୍ଟି'-୧-୧୫ମଇ-୨୦୦୭)



# ଆଦିବାସୀର ଗୋପୀବାବୁ

## ଏକ ବିସ୍ମୟକର ଆବିଷ୍କାର

ଦୀର୍ଘ ଆଠବର୍ଷ ତଳର କଥା । ମୁଁ ପହଞ୍ଚି ଯାଇଥାଏ ଜ୍ଞାନପୀଠପୁରସ୍କାର ବିଜେତା ଶ୍ରୀ ଗୋପୀନାଥ ମହାନ୍ତିଙ୍କର ବାସଭବନରେ । ଗୋପୀବାବୁ ଗୋଟିଏ ଆଦିବାସୀ ସମ୍ପର୍କିତ କର୍ମଶାଳାରେ ମୁଖ୍ୟବକ୍ତା ଭାବରେ ଯୋଗଦେବା ପାଇଁ ସ୍ୱୀକୃତି ପ୍ରଦାନ କରି ସାରିଥାନ୍ତି । ସକାଳର ଶୀତୁଳିଆ ପହର । ନରମ ଝିକି ଝିକି ଖରା ବିଛେଇ ହୋଇଯାଇଥାଏ ଗୋପୀବାବୁଙ୍କ ଲନ୍‌ରେ । ତାହା'ର ଆସର ଜମିଥାଏ ସାହିତ୍ୟିକ ବନ୍ଧୁମାନଙ୍କ ମେଳରେ, ବୈଠକଖାନାରେ ।

ସବୁ କଳରୋଳ ସ୍ତିମିତ ହୋଇଯାଇଛି । ସମୟ ଯିମିତି ସ୍ତବ୍ଧ ହୋଇ ଚାହିଁବସିଛି, କିଛି ଅଭାବନୀୟ ଘଟିବା ପାଇଁ । ହଠାତ୍ କାହୁଁ କୋରାପୁଟର ସୀମାନ୍ତ ଅଞ୍ଚଳରୁ ଗୋଟିଏ ଅଜଣା କନ୍ଧ ଆସି ପହଞ୍ଚି ଯାଇଛି, ତାର ଚେରବୁଟିର ଔଷଧ ଧରି । ଝଡ଼ର ହାବୁକା ପରି ଗୋପୀବାବୁ, ଘରର ଅଳିନ୍ଦ ଭିତରୁ ଛୁଟି ଆସିଛନ୍ତି ଆଉ କୋଳେଇ ପାଛୋଟି ନେଇଯାଇଛନ୍ତି, ସେହି କନ୍ଧଟିକୁ ବୈଠକଖାନା ଭିତରକୁ । କଣ୍ଠରେ ତାଙ୍କର ପ୍ରାଣ ଉଛୁଳା ହମ୍ବାରଡ଼ି, 'ଏ ପୁଅ ଗୋଟିଏ ନୂଆ ଅତିଥି ଆସି ପହଞ୍ଚିଛି । ଏଇ ଅବସରରେ ଆଉ ଟିକିଏ ତତଲା ପାଣି ପରଷି ଦେଇ ଯା, ଆଉ ସାଙ୍ଗରେ ଆଣିଥା ମୋର ବଇଁଶୀ ଗୋଛାକ ।'

କନ୍ଧର ଜୀବନ ବଇଁଶୀ ସୁରରେ ଯୋଡ଼ା । ବଇଁଶୀ ଗୋଛାରୁ ଗୋଟିଏ ଆଡ଼ବଙ୍କା ବଇଁଶୀଟିଏ ବାହାର କରି କନ୍ଧଟି ଆରମ୍ଭ କରିଦେଲା, ଚଇତି ପରବର ଉଛୁଳା ସୁର । କାଳସୀ ଲଗା ବେଢ଼ୁଣୀର ଅରିଲା ନାଚପରି ଗୋପୀବାବୁଙ୍କ ଓଠରୁ ବଇଁଶୀରେ ଗୁମୁରି ଉଠିଲା, ସ୍ୱର ଲହରୀ ଝର ଝର ଝରଣାର ନିନାଦ ଭଳି; ଆଉ ସେଇ ସ୍ୱରଟି ବେଢ଼େଇ ହୋଇଗଲା କନ୍ଧଟିର ଉଠିଆ ସୁର ଦିହରେ ଅଙ୍କାବଙ୍କା ଲତାଟି ପରି । ଅପୂର୍ବ ଉଭୟଙ୍କର ଯୁଗଳବନ୍ଦୀ–ଆଉ ସ୍ୱରର ଐକ୍ୟତାନ । ପିଆଲା ପରେ ପିଆଲା ଚାହାର ପରଷା ଚାଲିଥାଏ । ସ୍ୱରର ସମ୍ମୋହିତ ମାଦକତାରେ ଭରି ଉଠିଥାଏ ସମଗ୍ର ବୈଠକଖାନା । କିଛି ସମୟ ବିତିଯାଇଛି । କନ୍ଧଟି ତଳକୁ ନିଘାକରିଛି, ଆଉ





ଚମକି ପଡ଼ିଛି ଆତଙ୍କରେ । ଆହା ତା'ର ତୁଣ୍ଡର ଅଇଁଠା ପିଆଲାଟାରେ ଆତ୍ମଭୋଳା ଗୋପୀବାବୁ ଶୋଷି ଚାଲିଛନ୍ତି କପ୍ ପରେ କପ୍ ଚାହା । ଆଚମ୍ଭିତ ହୋଇ ଚାହିଁ ରହିଛି କନ୍ଧଟି ।

ବଇଁଶୀ ବଜା ପର୍ବ ଶେଷ ହୋଇଛି । ଗୋପୀବାବୁ ଭିତରକୁ ଯାଇଛନ୍ତି । ଆତିଥେୟର ଆଦରରେ କନ୍ଧଟି ବିସ୍ମୟରେ ନିର୍ବାକ ପାଲଟି ଯାଇଛି । ହଠାତ୍ କନ୍ଧଟି କହି ଉଠିଛି, 'ବାବୁଟି ମତେ ଶରଧାରେ କିଣିନେଲା । ହେଲେ ଏଡ଼େ ଭଲ ଆଉ ଏତେ ଭୋଳା ହେଲା କିପରି ? ବାବୁର ମଥାରେ ଟିକିଏ ଗୋଳମାଳ ରହିଯାଇଛି ନିଶ୍ଚୟ ।'



'ହଁ ସେଇ ଟିକକ ଗୋଳମାଳ ଆଉ ଆତ୍ମଭୋଳା ପଣ ହିଁ ଆଣିଦେଇଛି ଗୋପୀବାବୁଙ୍କ ଲେଖନୀରୁ ଓଡ଼ିଶାକୁ ଯଶ ଆଉ ଗୌରବ ।' ପ୍ରତି ଉତ୍ତର ଛଳରେ କହିଲେ ଜଣେ ସାହିତ୍ୟିକ ବନ୍ଧୁ ।

ଘୂର୍ଣ୍ଣିର ଉଚ୍ଛ୍ୱାସ ପରି ପୁଣି ପଶି ଆସିଛନ୍ତି ଗୋପୀବାବୁ ବୈଠକଖାନା ଭିତରକୁ ଆଉ କନ୍ଧଟିର ଦେହରେ ବେଢ଼େଇ ଦେଇଛନ୍ତି ଗୋଟିଏ ଶୀତଦିନିଆ ଚାଦର ଆଉ ହାତରେ ଧରେଇ ଦେଇଛନ୍ତି କିଛି ପାଥେୟ । ଅତି ସଙ୍କୋଚରେ ନରମି ଯାଇଛି କନ୍ଧଟି । ଗୋପୀବାବୁଙ୍କ କଣ୍ଠରେ ସମ୍ବେଦନାର ସ୍ୱର, 'ମତେ କ'ଣ ଜାଣିପାରିଲ ନାହିଁ ।' ତା' ପରେ ସେ କନ୍ଧ ଭାଷାରେ କହିଛନ୍ତି, 'ମା ଦାସୁ ପ୍ରାସକା ଗୋପୀନାଥ-ମୁଁ କନ୍ଧ କୁଳର ପ୍ରାସକା ବଂଶର ଗୋପୀନାଥ-ହଁ ତୁମର ଗୋପୀ କନ୍ଧ ।'

XXX XXX XXX

ପୂର୍ବାହ୍ନର ବେଳା ବାହାରେ ଖରା ଡହକୁ ଥାଏ । ଗୋପୀବାବୁ ଆସି ପହଞ୍ଚିଲେ କର୍ମଶାଳାର କକ୍ଷରେ । ସଭିଙ୍କ ସହ ପ୍ରାରମ୍ଭିକ ପରିଚୟର ଉଚ୍ଛୁଳା ହସ ଆଉ କଥା ଲହରରେ ଗୋପୀବାବୁ ଆମକୁ ନେଇ ପହଞ୍ଚେଇ ଦେଇଥାନ୍ତି ତରଙ୍ଗାୟିତ ପାହାଡ଼ ଘେରା ଲକ୍ଷ୍ମୀପୁର ଘାଟୀର ଡାଲୁ ଉପତ୍ୟକାରେ, ଯାହାର ଦୁଇପାଖେ ତାଙ୍କର କାଳଜୟୀ ଉପନ୍ୟାସ 'ପରଜା' ଆଉ 'ଅମୃତର

ସନ୍ତାନ'ର ଚରିତ୍ରମାନେ ଘୁରି ବୁଲୁଥିଲେ ।

ଗୋପୀବାବୁଙ୍କୁ କର୍ମଶାଳାରେ ପ୍ରଥମ ପ୍ରଶ୍ନ ଏପରି ଥିଲା ।

*' -ଆଦିବାସୀଙ୍କ ସହ ଆପଣଙ୍କର ସମ୍ପର୍କ କେଉଁ ସମୟରୁ ?'*

ଗୋପୀବାବୁଙ୍କ ମୁହଁରେ ବିସ୍ମୃତିର ଛାଇ ଖେଳି ଯାଇଛି; ଆଉ ମନର ଗମ୍ଭୀରା ଭିତରୁ ଦୂର ଅତୀତର ଗବାକ୍ଷଟି ଫିଟିପଡ଼ିଛି । ସେ କହିଛନ୍ତି, 'ହଁ ଆଦିବାସୀମାନଙ୍କ ସହିତ ମୋର ସମ୍ପର୍କ ଚାକିରୀର ପ୍ରାରମ୍ଭ କାଳରୁ, ପ୍ରାୟ ୧୯୩୯ମସିହାରୁ । ଆଜିଯାଏଁ ତ ସେହି ସମ୍ପର୍କ ଅତୁଟ । ମୁଁ ସେମାନଙ୍କ ସହ ଦିନ ଦିନ ଧରି ରହିଛି ଆଉ ମନଖୋଲା ମିଶିଛି । ରାତିରେ ତାଙ୍କରି ପିଣ୍ଡାରେ ଶୋଇଛି । ଚଟେଇ ପାରି ଏକାଠି ବସି ସୁଖଦୁଃଖ ହୋଇଛି । ଏକା ସାଙ୍ଗରେ ବସି ମାଣ୍ଡିଆ ଜାଉ, ସୁଆଁ ଜାଉ ଆଉ ଆମ୍ବଟାକୁଆ ଜାଉ ଖାଇଛି ।'

*' - ଆପଣ କିପରି ଆଦିବାସୀ ସହିତ ଏତେ ଘନିଷ୍ଠ ଭାବେ ମିଶିପାରିଲେ ?'* ପ୍ରଶ୍ନକଲେ ଜଣେ ଶ୍ରୋତା ।

ଗୋପୀବାବୁଙ୍କ ପୁରୁଣା ସ୍ମୃତି ସବୁ ଉଝାଳି ଉଠୁଥିଲା । ମୁହଁରେ ଝଟକି ଉଠୁଥିଲା ଆବେଗର ଉଚ୍ଛ୍ୱାସ । ସେ କହିଛନ୍ତି,'ଭଲ ପ୍ରଶ୍ନ ପଚାରିଛ । ମୁଁ ଗସ୍ତରେ ଗଲାବେଳେ ରହୁଥାଏ କେଉଁ ଦୂର ଅପନ୍ତରାର ଡାକବଙ୍ଗଳାରେ, ଆଉ ତା'ର ନିର୍ଜ୍ଜନ କୋଠିରେ । ଆଗରୁ ପାଖ ଆଉ ଦୂର ଗାଁର ସମ୍ବାଦ ନେଇଥାଏ । ତୁଣ୍ଡଅଗରେ ମନେ ରଖିଥାଏ ସେହିସବୁ ଗାଁର ସର୍ଦ୍ଦାର, ସାଓଁତା ଆଉ ମୁଖିଆ ଲୋକଙ୍କର ନାଁ । ଆଗରୁ ଦରୁଆନକୁ କହି ରଖିଥାଏ । ଖଣ୍ଡିଏ ଲୁଙ୍ଗି ଆଉ ଗାମୁଛା ପିନ୍ଧି,ଡାକବଙ୍ଗଳାରେ ପଛପଟ ଦରଜା ଦେଇ ବାହାରକୁ ଚାଲିଯାଏ । କାନ୍ଧରେ ମୋର ଲଟକିଥାଏ ଗୋଟିଏ ଝୁଲାମୁଣି । ଠିକଣା ଗାଁରେ ଯାଇ ପହଞ୍ଚେ । ମୁଖିଆ ଲୋକଙ୍କୁ ଠାବକରି ତା' ନାଁଧରି ଡାକେ-ହଁ ଡାକେନାହିଁ ଯେ ଆଦରରେ କୁହାଟ ଛାଡ଼େ । ଆଉ ତା' ଉତ୍ତରରେ ସେ ଛୁଟିଆସେ ମୋ' ପାଖକୁ ।'

*ତା'ପରେ ଆପଣ କିପରି ତାକୁ ସ୍ୱାଗତ କରନ୍ତି ?*

'ରୋମାଞ୍ଚକର ଅନୁଭୂତିର ଅସରନ୍ତି ପସରା ଖୋଲି ଦେଇଛନ୍ତି ଗୋପୀବାବୁ । ସେ ଉଲ୍ଲସିତ କଣ୍ଠରେ କହି ଚାଲିଛନ୍ତି, 'ତାପରେ, ମୋର ହାତଟିକୁ ଶରଧାରେ ନେଇ, ତାହାର କାନ୍ଧରେ ବେଢ଼େଇ ଦେଇ ତାକୁ ଜାବୁଡ଼ି ଧରେ । ଆଉ ତା'ର ହାତରେ ଧରେଇଦିଏ ଗୋଟିଏ ସିଗାରେଟ ପ୍ୟାକେଟ । ତାର ଥରିଲା ଓଠରେ ଗୋଟିଏ ସିଗାରେଟ ଥାପିଦେଇ,ଡିଆସିଲି କାଠି ଜଳେଇ ସେଥିରେ ନିଆଁ ଧରେଇ ଦିଏ । ଧୁଙ୍ଗିଆ ନିଆଁତ ତା'ର ଚିର ସହଚର । ସେ ପୁଳା ପୁଳା କରି ଧୂଆଁ ଛାଡ଼େ । ମୋର ହାତରେ ବନ୍ଧା ପଡ଼ିଥିବା ତାର ଦେହକୁ ଆଉ ତା'ର ଆଖିକୁ ଅନାଏ । ଆଉ ଦେଖେ, ସେହି ଆଖି ଦୁଇଟିରେ ଆଶଙ୍କାର ସମସ୍ତ ଭାବ କଟିଯାଇ ଖେଳିଉଠିଛି ନିଶ୍ଚିନ୍ତ ଆଉ ଆଶ୍ୱସ୍ତିର ଲହର ।'

*"- ତା'ପରେ କ'ଣ ହୁଏ ?"*

ଉଚ୍ଛୁଳା ହସରେ ଲୋଟିପଡ଼ି ଗୋପୀବାବୁ କହିଛନ୍ତି, 'ତା'ପରେ ଯାହାହୁଏ ସବୁ ଆନନ୍ଦର





କୋଳାହଳ । ମୁଁ ସେତେବେଳେକୁ ଗାଁର ମଝିଦାଣ୍ଡରେ ଯାଇ ପହଞ୍ଚିଥାଏ । ମତେ ଘେରିଯାଇଥାନ୍ତି ଟିକି ଆଉ ବଡ଼ ପିଲାମାନେ । ମୁଁ ଝୁଲାମୁଣିରୁ ବାହାର କରି ବାଣ୍ଟିଦିଏ, ଥାକକୁ ଥାକ ବିସ୍କୁଟ, ଛୋଟବଡ଼ ମୁଆଁ ଆଉ କିଛି ଖେଳନା । ସାନ ସାନ ଝିଅପିଲାଙ୍କ ହାତକୁ ବଢ଼ାଇଦିଏ ଟିକି ଟିକି ଦର୍ପଣ, ନାଲି ନେଳି ବାସନା ତେଲର ବୋତଲ ଆଉ କିଛି ଶସ୍ତା ଝିକିମିକିଆ ଗହଣା । ଗହଳିରେ ଗାଁ ଦାଣ୍ଡ ଉଛୁଳିପଡ଼େ ।'

ପ୍ଲାନେଟୋରିଏମର ନିବୁଜ କକ୍ଷର ସୀମାହୀନ ଆକାଶରେ ତାରାର ଛାଉଣି ପରି, ଆମେ ସବୁ ଶ୍ରୋତା, ଗୋପୀବାବୁଙ୍କ ବର୍ଣ୍ଣନା ଭିତରେ ଚାଲିଯାଇଥାଉ । ଘନ ଆଚ୍ଛାଦିତ ପାହାଡ଼ ଆଡ଼ିରେ ଖଞ୍ଜା ଛୋଟ ଆଦିବାସୀ ଗାଁର ଖୁସିରେ ଉବୁଟୁବୁ ଲୋକମାନଙ୍କ ଭିତରକୁ ।

*'ଆପଣ କିଛିଦିନ ଧରି କନ୍ଧ ଘରେ ରହିଯାନ୍ତି, ଅଡୁଆ କିଛି ଲାଗେନାହିଁ ।'*

ହସରେ ଜୁଡୁବୁଡୁ ଗୋପୀବାବୁଙ୍କ ମୁହଁରେ ଅନୁଶୋଚନାର ବିନ୍ଦୁମାତ୍ର ଚିହ୍ନ ନାହିଁ । 'ହଁ ପ୍ରଥମେ ଟିକିଏ ଅଡୁଆ ଲାଗିବ । ସେମାନେ ତ ପ୍ରତିଦିନ ଗାଧୁଆନ୍ତି ନାହିଁ, ତେଣୁ ଦେହରୁ ଟିକିଏ ଗନ୍ଧ ବାହାରେ । ଆଉ ପାଟିରେ ତ ଥାଏ ମଦର ଗନ୍ଧ । ଅଳ୍ପ ଅଭ୍ୟାସ ପଡ଼ିଗଲେ ଆଉ କିଛିନାହିଁ । ମାତ୍ର ସେହି ରହିବା ଭିତରେ ଯେଉଁ ଖୋଲା ହୃଦୟର ଆଦର ସମ୍ଭାଷଣ ମିଳେ, ତାହା ଭୁଲିବାର ନୁହେଁ ।'

*'ଆପଣ ଆଦିବାସୀ ସହିତ କେଉଁ ଭାଷାରେ କଥା କହନ୍ତି ?'*

'ମୁଁ ତାରି ଭାଷାରେ କଥାହୁଏ, ନହେଲେ ତା'ର ଅନ୍ତରର କଥା ଜାଣିବି କେମିତି । ଦକ୍ଷିଣ ଓଡ଼ିଶାର ସବୁ ଆଦିବାସୀ ଭାଷା ସଙ୍ଗେ ମୁଁ ପରିଚିତ । ମୁଁ କୁଭିକନ୍ଧ ଭାଷାତତ୍ତ୍ୱ, ଗଦବା ଭାଷା ଆଉ ସଉରା ଭାଷା ଉପରେ ବହି ଲେଖିଛି ।'

'ଏ ଆଦିବାସୀ ଭାଷା ନ ଶିଖିଲେ କିଛି ଅସୁବିଧା ରହିଛି ?'

ପ୍ରଶ୍ନଶୁଣି ଗୋପୀବାବୁଙ୍କ ଆଖି ଛଳ ଛଳ ହୋଇଗଲା । ଟିକିଏ ଅଭିମାନଭରା ଅଥଚ ଦୃଢ଼ ପ୍ରତିବାଦର ସ୍ୱରରେ କହିଲେ, 'ଅସୁବିଧା ତ ନିଶ୍ଚୟ ରହିଛି । ଭାଷା ନ ଶିଖିଲେ ଆଦିବାସୀ ସହିତ କିପରି ସମ୍ପର୍କ ସ୍ଥାପନ କରିବ ।

ତୁମେ କ'ଣ ଜାଣନାହିଁ ଯେ, ଓଡ଼ିଶାର ଜନସଂଖ୍ୟାର ପ୍ରାୟ ଚଉଠାଏ ଭାଗ ଆଦିବାସୀ । ଏହା ଭାରତରେ ଏକ ରେକର୍ଡ଼ । ଓଡ଼ିଶାର ପ୍ରାୟ ଷାଠିଏ ଲକ୍ଷ ଆଦିବାସୀଙ୍କ ଭିତରୁ ପଞ୍ଚତିରିଶି ଲକ୍ଷ ଆଦିବାସୀ ତାଙ୍କର ନିଜର ଭାଷାରେ ହିଁ କଥା କହନ୍ତି । ଆଉ ସେମାନଙ୍କ ଭିତରୁ କେତେକ ମାତ୍ର ପୁରୁଷ ଲୋକ ହିଁ ଓଡ଼ିଆ ବୁଝନ୍ତି । ଦୁଃଖର କଥା ଏହା କେହି ଜାଣିବାକୁ ବା ବୁଝିବାକୁ ପ୍ରସ୍ତୁତ ନୁହନ୍ତି ।'

*'ଆମେ ଗଲେ, ଆଦିବାସୀ ଆମକୁ କିପରି ଭାବେ ଗ୍ରହଣ କରିବ ?'*

ଗୋପୀବାବୁ ଟିକିଏ ଛଳକରି କହିଛନ୍ତି 'ମୁଁ ଜାଣେନାହିଁ, ତୁମପରି ଧୋବ-ଧାଉଳିଆ ଲୋକଙ୍କର ଆଦିବାସୀଙ୍କ ପ୍ରତି ଦରଦ ଅଛି କି ନାହିଁ ? ଭାଷା ଛଡ଼ା ତାର ଚଳଣି ବିଷୟରେ ତୁମେ ଜାଣିବା ଦରକାର ଯେପରି ତା' ସହିତ ମନଖୋଲା ହୃଦୟର ସମ୍ପର୍କ ସ୍ଥାପନ କରିପାରିବ ।



ପୂର୍ବ ଅଭିଜ୍ଞତାରୁ, ଆଦିବାସୀ ଧୋବ-ଧାଉଳିଆ ଲୋକଙ୍କୁ ଶୋଷକଶ୍ରେଣୀର ଏକ ଅଂଶ ରୂପେ ଧରି ନେଇଥାଏ । ତେଣୁ ତୁମେ ଗଲେ, ତୁମର ଚାଲି ଚଳଣ ଉପରେ ସେ ନିଘା ରଖିଥାଏ ।

ପାହାନ୍ତିଆର କୁକୁଡ଼ା ଡକା ବେଳ । ବାହାରେ ଶୀତ କୁଣ୍ଡା ପରି ଝରିପଡୁଛି । ସେହି ହିମାଳୟରେ ବସି, ଅବା କେଉଁ ନିଛାଟିଆ ବେଳରେ ସେମାନେ ବିଚାର କରନ୍ତି ଯେ, ତୁମେ କିପରି ଲୋକ ?'

କିଛିବର୍ଷ ତଳେ ପ୍ରଖ୍ୟାତ ସଙ୍ଗୀତଜ୍ଞ ତଥା ଭାରତୀୟ ବେତାର କେନ୍ଦ୍ରର ଜଣେ ସର୍ବୋଚ୍ଚକର୍ତ୍ତା ଶ୍ରୀ ପି.ଭି. କୃଷ୍ଣମୂର୍ତ୍ତି କୋରାପୁଟ ଅଞ୍ଚଳରୁ ଫେରି କହିଥିଲେ ଯେ, କନ୍ଧମାନଙ୍କର ସଙ୍ଗୀତରେ ଥିବା ତାଳର ଗତି ଆଉ ଲହରର ସ୍ୱର ମୂର୍ଚ୍ଛନା ଅନବଦ୍ୟ । ତାହା ବହୁ ପରିମାଣରେ ଶାସ୍ତ୍ରୀୟ ସଙ୍ଗୀତର ସମତୁଲ ଆଉ ଏହି ସଙ୍ଗୀତରେ ଥିଲା ଗୋପୀବାବୁଙ୍କର ଅପୂର୍ବ ପାରଦର୍ଶିତା ।

ପୂର୍ବାହ୍ନ ଅଧିବେଶନର ଅନ୍ତିମ ପ୍ରଶ୍ନ ଏପରି ଥିଲା ।

*'...ଆପଣ ଆଦିବାସୀଙ୍କ ସହ ମିଶିବା ପାଇଁ କାହାଠାରୁ ସର୍ବାଧିକ ସାହାଯ୍ୟ ପାଇଛନ୍ତି ?'*

'ହଁ ମୁଁ କହିବାକୁ ଭୁଲି ଯାଇଛି । ତାହା ପାଇଛି ମୋର ବଂଶୀ ବଜେଇବାର ସଉକ ବା ନିଶାରୁ । ସେହି ବଇଁଶୀ ବଜେଇ ମୁଁ ପହଞ୍ଚିଯାଇଛି ଆଦିବାସୀର ମନ ଗହନରେ, ଆଉ ତା'ର ରୀତିନୀତିର ଅନ୍ତଃପୁରରେ । ସେହି ବଇଁଶୀକୁ ନେଇ ଯୋଗଦେଇଛି ତା'ର ଜାନି-ଯାତ୍ରା ଆଉ ମେଳା ମଉଛବରେ ।'

*'...ଆଉ ଅନ୍ୟବେଳେ କଣ ବଂଶୀ ବଜାନ୍ତି ?'*

'ହଁ ବଇଁଶୀ ମୋର ଜୀବନସୂତ୍ରରେ ବନ୍ଧା । କୌଣସି ଲେଖା ଆରମ୍ଭ କରିବା ପୂର୍ବରୁ, ମୁଁ ପୁରାପୁରି ନିମଗ୍ନ ରହିଥାଏ ବଇଁଶୀ ବଜେଇବାରେ । ସେହି ବଂଶୀ ସୁରର ତନ୍ମୟତା, ମତେ ଘେନିଯାଏ ଗଭୀର ଅନୁଭୂତିର ଅତଳ ସ୍ତରକୁ । ସେହି ସୁରର ପରଶରେ ମାଟିଆରେ ପାଣି ପଶିଲା ପରି ମୋ ଭିତରେ ଗଦ୍ ଗଦ୍ ହୋଇ ଭରିଯାଏ ଭଲ ପାଇବାର ଅସରନ୍ତି ପ୍ରବାହ । ଆଉ ତାହା ଉଛୁଳି ପଡ଼ି, ହୁଏ ମୋର ଲେଖା ।'

ଗୋପୀବାବୁ କିଛି ସମୟ ନୀରବ ରହିଛନ୍ତି । ତାଙ୍କ ମୁହଁ ଝଟକି ଉଠିଛି କେଉଁ ଜ୍ୟୋତିର ଆଭାରେ । ଆଖି ଦୁଇଟିରେ ଫୁଟି ଉଠିଛି ହୀରାର ଦ୍ୟୁତି । ସେ ଅତି ସହଜ ସ୍ୱରରେ କହିଛନ୍ତି, 'ମୁଁ କିଛିକାଳ ଲେଖାରେ ନିମଗ୍ନ ରହିସାରି ଉଠି ବସିଥାଏ । 'ସେତିକିବେଳେ ଅନୁଭବ କରେ ଯେ, ସବୁ ଅଶାନ୍ତି ଓ ଜଞ୍ଜାଳ ଦୂର ହୋଇଯାଇଛି ଆଉ ପ୍ରଚୁର ଆନନ୍ଦ ଝରିଆସିଛି । ଠିକ୍ ଯେମିତି ମୁଁ ତୃପ୍ତିଭରା ସ୍ନାନ ସାରି ପୋଛାପୋଛି ହୋଇ ପ୍ରଶାନ୍ତିର ନୀରବତା ମଧ୍ୟରେ ବସିରହିଛି । ହଁ ଏହି ସମୟରେ ମୁଁ ପାଇପାରିଛି ସାତ୍ତ୍ୱିକ ନିର୍ବାଣର ଟିକିଏ ସ୍ପର୍ଶ ।'

('ସମଦୃଷ୍ଟି'-୧୬-୩୦ଜୁନ୍-୨୦୦୭)





# ମା ଦାସୁ ପ୍ରାସକା ଗୋପୀନାଥ

## ( ମୁଁ କନ୍ଧ କୁଳରେ ପ୍ରାସକା ବଂଶରେ ଜାତ ଗୋପୀନାଥ )

ଉପରବେଳାର ଅଧିବେଶନ । ଗୋପୀବାବୁ ଆସି ବସିଥିଲେ କର୍ମଶାଳାର କକ୍ଷରେ । ଝରକାର ଫାଙ୍କରେ ଅପରାହ୍ନର ସୂର୍ଯ୍ୟ ଢଳିଗଲେଣି ।

'- ଆପଣଙ୍କର ଅଙ୍ଗେନିଭା କାହାଣୀରୁ ଏ ବେଳର ବକ୍ତବ୍ୟ ଆରମ୍ଭ କରନ୍ତୁ ।' ଅନୁରୋଧ ଜଣାଇଲେ ଜଣେ ଶ୍ରୋତା ଗୋପୀବାବୁଙ୍କୁ ।

ଗୋପୀବାବୁ ତାଙ୍କର ବକ୍ତବ୍ୟ ଆରମ୍ଭ କଲେ । ବହୁ ପୁରୁଣା ଦିନର ସ୍ମୃତି ଉଜାଣି ବହିଚାଲିଲା । କେଉଁ କରୁଣ ସ୍ମୃତିର ଆଘାତରେ ତାଙ୍କର ମନଟି ଭାରାକ୍ରାନ୍ତ ହୋଇଗଲା ।

'ହଁ ଗୋଟିଏ ଅଙ୍ଗେନିଭା କଥା କହୁଛି । କୋରାପୁଟ ଜିଲ୍ଲାରେ ମୋର ପ୍ରଥମ ଚାକିରୀ ଜୀବନ କାଳର ଘଟଣା । ମୁଁ ଯାଉଥାଏ ଗୋଟିଏ ଦୂର ଆଦିବାସୀ ଗାଁକୁ । ବାଟରେ ଦେଖିଲି ଗୋଟିଏ କନ୍ଧ ଜୁଆନ ଟୋକା ପାହାଡ଼ ଆଡ଼ିରେ ଥକାମାରି ବସି ବଇଁଶୀ ବଜାଉଛି । ସେଇ ବଇଁଶୀ ସୂରର କରୁଣ ମୂର୍ଚ୍ଛନା ସାରା ଆକାଶକୁ ଯେପରି ଆଚ୍ଛନ୍ନ କରିରଖିଛି । ଏତେ ଅଳ୍ପ ବୟସର ଜୁଆନ ଟୋକା, ଆଉ ତା'ର ମୁହଁରେ ଏତିକି ଚିନ୍ତାର ରେଖା, ଯିମିତି ଲଙ୍ଗଳ ସିଆରରେ ଚାଷ ହୋଇଛି ।

'ମୁ ତାକୁ ପଚାରିଲି, 'କେଉଁ ଦୁଃଖରେ ମନ ଉଦାସ କରି ବଂଶୀ ବଜଉଛୁ ।'

'ନାହିଁ ବାବୁ, ଏ ଯେଉଁ ତୀଖ ପାହାଡ଼ଟି ଦିଶୁଛି, ତାରି ଉପରେ ଚଢ଼ିବି, ଆଉ ସେଠୁ ଡେଇଁ କରି ଜୀବନ ହାରିଦେବି ।' କହିଲା କନ୍ଧ ଟୋକାଟି ।

'କେଉଁ ଦୁଃଖରେ ?' ମୁଁ ପଚାରିଲି ।

ସେ ତାର ବିଷାଦଗ୍ରସ୍ତ ମୁହଁର ଡବ ଡବ ଆଖିରେ ମତେ ଅନେଇଲା ଆଉ କହିଲା, 'ଦଶବର୍ଷ ତଳର କଥା । ଛେଳି ଚରଉ ଚରଉ ମତେ ଭୋକ ଲାଗିଲା । ମୁଁ ସାହୁକାରକୁ କହିଦେଇ ଖାଇବାକୁ ଗଲି । ଫେରିଲା ବେଳକୁ ଗୋଟିଏ ଚିତାବାଘ ଆସି କେତୋଟି ଛେଳି ମାରିଦେଇଛି । ମତେ ସାହୁକାର କହିଲା, 'ତୋରିଯୋଗୁଁ ମୋର ଯେତେ ଛେଳି ମଲେ, ତା'ର ପଇସା ଦେବୁ । ଆଉ ସେହି ଛେଳିମାନେ

ଅଗଲା ଦିନମାନଙ୍କରେ ଯେତେ ଛୁଆ ଜନ୍ମ କରିଥାନ୍ତେ, ଆଉ ସେମାନେ ବଡ଼ହୋଇ ବିକ୍ରି ହୋଇଥାନ୍ତେ, ତାହାର ମଧ୍ୟ ପଇସା ଦେବୁ ।' ମୁଁ ସେହି ପଇସା ଶୁଝିବା ପାଇଁ କାଗଜରେ ଟିପଦେଇ କାଳ କାଳ ଲାଗି ସାହୁକାରର ଗୋତି ହୋଇଛି । ଆଉ ଜୀବନରେ ଅୟସ କରିପାରିବି ନାହିଁ କି ସଂସାର ପାତିପାରିବି ନାହିଁ । ତେଣୁ ନିଶ୍ଚୟ ଜୀବନ ହାରିଦେବି ।'

'- ବଡ଼ କରୁଣ କାହାଣୀ ।' ସମବେଦନାର ସୂରରେ କହିଉଠିଲେ କେତେକ ଶ୍ରୋତା ।

ଗୋପୀବାବୁ କହି ଚାଲିଛନ୍ତି,'ସେହି ଦରଦଭରା କାହାଣୀର ଛାପ' ମୋର ମନରେ ଏତେ ଗଭୀର ଥିଲା ଯେ, ସେହି ଚରିତ୍ରଟି ଅଜାଣତରେ ସ୍ଥାନ ପାଇଯାଇଛି ମୋର 'ପରଜା' ଆଉ 'ଅମୃତର ସନ୍ତାନ'ଉପନ୍ୟାସରେ ।

X X X

କାହାଣୀଟି ଶେଷ ହେଲା, ଗୋପୀବାବୁଙ୍କୁ ପରବର୍ତ୍ତୀ ପ୍ରଶ୍ନଟି ଥିଲା ଏହିପରି ।

'- ଆଦିବାସୀ ଶୋଷିତ ହୁଏ କିପରି ?'

ଗୋପୀବାବୁଙ୍କ ଆଖି ଆଗରେ ସଜୀବ ହୋଇଉଠିଲା ଅଙ୍କାବଙ୍କା ପାହାଡ଼ରାଶିର ଧାରେ ଧାରେ ଆଦିବାସୀର ଫସଲଭରା କ୍ଷେତସବୁ । ସେ କହିଲେ-'କାର୍ତ୍ତିକ ମାସ । ଅଣେଇ ହେଲା ଥାଳିପରି ଝୋଲାଭୂଇଁର ଉପରକୁ ହଳଦିଆ ଅଳସି-ଫୁଲର ଜୁଆରରେ, ପାହାଡ଼ କଡ଼ର ଜମିସବୁ ମଣ୍ଡି ହୋଇଯାଇଛି । ତା'ରି ମଝିରେ ଠିଆ ହୋଇଛି ସୁଆଁ, କାଙ୍ଗୁ, ଜଡ଼ା ଆଉ କାଟିଙ୍ଗର କ୍ଷେତ । ତା'ର ଆହୁରି ଉପରକୁ ବଡ଼ କାନ୍ଦୁଲର ଝୁମ୍ପା ଝୁମ୍ପା ପେନ୍ଥାମାନ ଝୁଲିରହିଛି । ସବାତଳେ ଝରଣା ଝର ଝର ଝୋଲାଭୂଇଁର କୂଳ ସବୁ ଛାଉଣି ହୋଇଯାଇଛି । ନାଲି ଗୁଲୁଗୁଲୁ ପାଚିଲା ଧାନରେ । ହେଲେ ଏସବୁ ଆଦିବାସୀ ଭୋଗ କରିପାରେ ନାହିଁ । ସବୁ ଫସଲ ବନ୍ଧାରହିଛି ସାହୁକାର ପାଖରେ । ଆଗରୁ କରଜ ଆଣି ଚୁକ୍ତିକରି ଦେଇଛି, ଫସଲ ସବୁ ବିକିବ ଅନେକ ଶସ୍ତାଦରରେ ।'

ଗୋପୀବାବୁଙ୍କର ସେହି ବର୍ଣ୍ଣନାର ଉଚ୍ଛ୍ୱାସ ମଧ୍ୟରେ ଆମେ ପହଞ୍ଚିଗଲୁ କାଶୀପୁର ଉପତ୍ୟକାର ପାହାଚ ପାହାଚ ପରି ବିଚ୍ଛେଇ ହୋଇଯାଇଥିବା କ୍ଷେତର ପରିଧି ଭିତରେ । ହେଲେ ସାରା ଉପତ୍ୟକାଟି ଯେପରି ଲୁଚିଯାଇଥିଲା କୁହୁଡ଼ିର ଘନ ଆସ୍ତରରେ ।

'-ସାହୁକାର ହାତକୁ ଫସଲ ଚାଲିଗଲେ ଆଦିବାସୀ କିପରି ଚଳେ ?' ପ୍ରଶ୍ନକଲେ ଜଣେ ଶ୍ରୋତା ।

ଗୋପୀବାବୁଙ୍କ କଣ୍ଠରେ ଆହତ ବେଦନାର ସ୍ୱର । 'ଅସଲ ଅମଳ ପରେ ଇମିତି ଦୁଇତିନି ମାସ କଟିଯାଏ । ଚଇତରୁ ଆସିଲା ତିରୋଟ ମାସ । ଘରେ ଖାଦ୍ୟ ସରିଛି । ଅଇଛା ତିନି-ଚାରିମାସ ହାଁ ହାଁ । ସେଥିରେ ପୁଣି ମଦ ପାଣିର ଅଭ୍ୟାସ ରହିଛି । ସେ ପେଟ ବିକଳରେ ନାନା ଅସୁବିଧା ସର୍ତ୍ତରେ କରଜ କରେ । ସରକାରୀ ଆଇନ ଆଳରେ, କର୍ମଚାରୀଙ୍କଠାରୁ ମଧ୍ୟ ଶୋଷିତ ହୁଏ । ବେଳେବେଳେ ସବୁ ଜମି ବନ୍ଧାପକାଇ ଅଥବା ବିକିଦେଇ ସେ ହୁଏ ସାହୁକାରର ଗୋତି । ଆଉ ନିଜର ପୁରୁଣା ଜମି ଚାଷ କରେ ସାହୁକାର ପାଇଁ ତାର ଗୋଡ଼ ତଳର ବେଠିଆ ହୋଇ । ଜାଣ ହାଣ କୁରାଢ଼ୀ ବେକକୁ ନିଏ ।'

'-ଏଇ ହାଣ କୁରାଢ଼ୀ କେଉଁଠି ବାଜେ ?'





'ଆଉ କେଉଁଠି ବାଜେ-ବାଜେ ଆଦିବାସୀର ବେକରେ ଅଥବା ତାର ଗହୀରିଆ ଛାତିରେ ।'
ଏତକ କହିସାରି ଗୋପୀବାବୁ ଟିକିଏ ନୀରବ ରହିଲେ ।

ତା'ପରେ ତାଙ୍କର ମୁହଁରେ ଫୁଟିଉଠିଲା ଏକ ବିକ୍ଷୁବ୍ଧ ଭାବ । ଆଉ ସେହି ବିକ୍ଷୁବ୍ଧ ସ୍ୱରରେ କହିଲେ, 'ଏଇ ସମସ୍ତ ଶୋଷଣର ଜ୍ୱାଳା ଏତେ ଭୟାନକ ଆଉ ଉତ୍କଟ ଯେ, ଆଦିବାସୀ ଯାହା ଉତ୍ପାଦନ କରେ, ଭୋଗ କରିପାରେ ନାହିଁ । ଆଉ ଯେତେ ଯାହା ଦେଲେ ସବୁ ଚାଲିଯାଏ ପର ହାତକୁ । ସେ କାଳକାଳ ଧରି ରହିଥାଏ ନିଃସ୍ୱ ଆଉ ଗରିବ ।'

'-ଏ ଶୋଷଣର ପ୍ରତିକାର ପାଇଁ କ'ଣ ବ୍ୟବସ୍ଥା ହୋଇନାହିଁ ?'

ଅତୀତ ଜୀବନର ଉଲ୍ଲାସଭରା ସ୍ମୃତିରେ ତାଙ୍କର ମୁହଁ ଝଲସିଉଠିଲା । ନିସ୍ତରଙ୍ଗ ଆଖିର ହ୍ରଦରେ ଖେଳିଗଲା ହସର ଲହରୀ । ତାଙ୍କର ଜୀବନର ଏକ ଗୌରବମୟ ଅଧ୍ୟାୟ । ସେ ତିଆରି କରିଥିଲେ ସର୍ବପ୍ରଥମେ ଆଦିବାସୀଙ୍କ ପାଇଁ ଆର୍ଥିକ ଉନ୍ନୟନର ଯୋଜନା ।

'ହଁ କିଛି ଅଙ୍ଗନିଭା କଥା କହୁଛି । ଭାରତ ସରକାର ୧୯୬୧ରେ ଭୁବନେଶ୍ୱରଠାରେ ଆଦିବାସୀ ଓ ହରିଜନ୍ମାଙ୍କ ପାଇଁ ଗୋଟିଏ ଆସିଷ୍ଟାଣ୍ଟ୍ କମିଶନର ପୋଷ୍ଟ ଖୋଲିଲେ । ଡକ୍ଟର ରାୟବର୍ମନ କିଛିଦିନ ରହିବା ପରେ, ମୁଁ ସେହି ଚାକିରୀରେ ଯୋଗଦେଲି । ଆଉ ୧୯୬୨ରେ ଆଦିବାସୀଙ୍କର ଆର୍ଥିକ ଉନ୍ନତି ଲାଗି ଗୋଟିଏ ଯୋଜନା ତିଆରି କରି ସରକାରଙ୍କୁ ଦେଲି । ତାହା ସରକାରଙ୍କର ସ୍ୱୀକୃତି ଲାଭକଲା । ସେହି ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ୧୯୬୩ରେ ମୁଁ ପୁଣି ଓଡ଼ିଶା ସରକାରଙ୍କ ଅଧୀନରେ ଯୋଗଦେଲି ସ୍ପେଶାଲ ଅଫିସର ପଦବୀରେ ।'

'- ସେହି ଯୋଜନା କେଉଁ ଅଞ୍ଚଳରେ କାର୍ଯ୍ୟକାରୀ ହେଲା ?'

'ପ୍ରଥମେ ଆରମ୍ଭ ହେଲା ଫୁଲବାଣୀର ବେଲଘର, କୋରାପୁଟର ନିୟମଗିରି ଆଦି ନିଘଞ୍ଚ ଅଞ୍ଚଳରେ, କାରଣ ସେଠାରେ ଶୋଷଣର ମାତ୍ରା ଥିଲା ଅଧିକ । କି ଅପୂର୍ବ ଉତ୍ସାହ । ଆଦିବାସୀମାନଙ୍କୁ କରଜରୁ ମୁକ୍ତକରି ସାହୁକାରର ଶୋଷଣରୁ ବାହାରେ ରଖାଗଲା । ଆଉ ତାର ଉତ୍ପାଦିତ ଆଉ ସଂଗୃହୀତ ପଦାର୍ଥର ବିକ୍ରି ଲାଗି ବ୍ୟବସ୍ଥା କରାଗଲା । ନିୟମଗିରି ପାହାଡ଼ର ଥାକକୁ ଥାକ ଝରଣା କୂଳରେ ଗଛ-ସବୁ ଛାଇ ହୋଇଯାଇଥିଲା ପେଚ୍ଛା ପେଚ୍ଛା ପାଚଲା ଫଳରେ । କଦଳୀ, କମଳା, ସପୁରୀ, ପଣସ ଜମାହେଲା ଛୋଟ ଛୋଟ ପାହାଡ଼ ପରି । ହେଲେ ମୋର ନିର୍ଦ୍ଦେଶ ଥିଲା ଆଦିବାସୀର ସମସ୍ତ ଜିନିଷ କିଣାହେବ,ଏପରିକି କେଞ୍ଚିଡ଼ି କଦଳୀ ମଧ୍ୟ । ନହେଲେ, ତା'ପାଇଁ ଗରାଖ ଖୋଜି ପୁଣି ସେ ପଡ଼ିଯିବ ମହାଜନ ଫାନ୍ଦରେ ।'

ଗୋପୀବାବୁଙ୍କ ମୁହଁରେ ଫୁଟିଉଠୁଥିଲା ହସର ଝଲକ । ଯିମିତି କୁହୁଡ଼ିର ଘନ ଆସ୍ତରଣ ଉଭେଇ ଯାଇ ବିଛେଇ ହୋଇଯାଇଛି ସୂର୍ଯ୍ୟଙ୍କର ସୁନେଲୀ କିରଣ । ଗୋପୀବାବୁ ଆବେଗଭରା କଣ୍ଠରେ କହି ଚାଲିଥିଲେ । ମୁଁ ନିର୍ଦ୍ଦେଶ ଦେଇଥାଏ ଯେ ଆଦିବାସୀ ଯେତେବେଳେ ଯୋଜନାର ଅଫିସ ବା ଦୋକାନକୁ ଆସିବ,ସେ ଯେପରି ପାଏ ଅତିଥିର ସମ୍ମାନ । ତାକୁ ଅନ୍ତତଃ ଖଣ୍ଡିଏ ସିଗାରେଟ, ବିଡ଼ି ଦେଇ ଯେପରି ସ୍ୱାଗତ କରାଯାଏ । ତିରୋଟ ସମୟରେ ଏହି ଯୋଜନାରେ ଆଦିବାସୀକୁ ତାର ଦରକାର ଅନୁସାରେ ଅଗ୍ରୀମ ଦିଆଯାଉଥିଲା । ସେହି ଅଗ୍ରୀମ ପଇସା ଅଥବା ତା'ର ଫସଲ ବିକା

ପଇସାରୁ ସେ ସମସ୍ତ ଦରକାରୀ ଜିନିଷ ନେଉଥିଲା ଯୋଜନାର ଦୋକାନରୁ, ଏପରିକି ତାର ପୂଜାରେ ବଳି ଦେବାପାଇଁ କୁକୁଡ଼ା ଆଉ ତାର ତୃଣ୍ଡସୁଆଦ ପାଇଁ ଶୁଖୁଆ ମଧ୍ୟ ।

'- ଶୁଖୁଆ, କ'ଣ ଆଦିବାସୀର ଏତେ ଦରକାରୀ ?'

ପ୍ରଶ୍ନ ଶୁଣି ଚମକି ପଡ଼ିଲେ ଗୋପୀବାବୁ । ସେ ପ୍ରତିବାଦର ସ୍ୱରରେ କହିଲେ, 'ତୁମେ ବୋଧହୁଏ ଜାଣି ନାହଁ ଆଦିବାସୀର ଜୀବନଧାରା । ନିଗିଡ଼ା ମାସ, ସବୁ ସରିଯାଇଛି । ସେ ମାସ ମାସ ଧରି ଖାଏ ଆମ୍ବଟାକୁଆ ଆଉ କାଟୁଆ ବଣ କନ୍ଦା ସିଝା ବିଚିକିଟିଆ ଜାଉ । ଡାହାଣ ହାତରେ ଗୋଟିଏ ଗିନାରେ ଧରିଥାଏ ଜାଉ, ଆଉ ବାଁ ହାତରେ ଧରିଥାଏ ଖଣ୍ଡେ ପୋଡ଼ା ଶୁଖୁଆ । ସେହି ପୋଡ଼ା ଶୁଖୁଆରୁ ଟିକିଏ ପାଟିରେ ନିଏ ଆଉ ତାରି ବାସନାରେ ତେଣ୍ଡିଦିଏ ଯେତେକ ଅସୁଆଦିଆ, ଅରୁଚା ଜାଉ ଆଉ ଦରପୋଡ଼ା କନ୍ଦା ସବୁ ।'

'-ଆଦିବାସୀ ସମସ୍ୟାର ସମାଧାନ କିପରି ହେବ ?'

'ହଁ, ହୁଏତ ଟଙ୍କା ଆଉ କର୍ମୀର ଅଭାବ ରହିଛି । ମାତ୍ର ଯେଉଁ ଯୋଜନା ହେଉଛି, ତାର ବାସ୍ତବତା ସହ କିଛି ସମ୍ପର୍କ ରହୁନାହିଁ । ଯେମିତି ଏହି ଦଣ୍ଡକାରଣ୍ୟ, ତିବ୍‌ବତୀୟ ଶରଣାର୍ଥୀ ଆଉ ଅନ୍ୟ ପ୍ରଦେଶର, ଆଦିବାସୀଙ୍କର ଯୋଜନାରେ,ଜମିକୁ ଭଲଭାବେ ଆବାଦ କରି, ମାଟିକୁ ଲୁଣପରି ଗୁଣ୍ଡକରି, ବର୍ଷେ ଫସଲ ଉପୁଜାଇ, ଭଲଜମି ଦିଆଗଲା । ଆଉ ଓଡ଼ିଶାର ଆଦିବାସୀଙ୍କ ପାଇଁ ଏକର ପିଛା ଦୁଇଶହ କି ତିନିଶହ ଟଙ୍କା । ସେଥିରେ ଖାଇବେ, ବଣ ହାଣି, ଡାଡ଼ି ଜମି କରିବେ । କଲୋନି ଟଙ୍କା ସରିଲେ ଯିଏଯୁଆଡ଼େ ଛୁ ।'







ଆଦିବାସୀର ଅସନ୍ତୋଷ ରହିଛି କ୍ରମାଗତ ଶୋଷଣ ଯୋଗୁଁ ସେ ଧୋବ ଧାଉଳିଆ ଲୋକଙ୍କୁ ବିଶ୍ୱାସ କରେନାହିଁ । ଯେତେ ଅତ୍ୟାଚାର, ଅନାଚାର ହେଲେ ମଧ୍ୟ, ସେ ଫେରାଦ ହେବାକୁ ଆସେ ନାହିଁ ।'

'-ଏହି ସମସ୍ୟାର ସମାଧାନ ଲାଗି କ'ଣ ଚେଷ୍ଟାର ଅଭାବ ରହିଛି ?'

'ପ୍ରଚୁର ବିମୁଖ ଗୋପୀବାବୁ ଏତିକିବେଳେ ନିଜର କଥା ଅଜାଣତରେ କହିବସିଲେ । ତାଙ୍କର ଜୀବନର କେତୋଟି ବର୍ଷ ଆଦିବାସୀଙ୍କ ସେବାରେ ଉତ୍ସର୍ଗୀକୃତ ।

'ହଁ ସେହି ଧୋବ ଧାଉଳିଆ ଭିତରୁ କ୍ୱଚିତ କେହି କେବେ ଆସନ୍ତି ଯିଏ ଶୋଷକ ହୁଅନ୍ତି ନାହିଁ । ଶୋଷକ ଘରେ ଆତିଥ୍ୟ, ବସାଉଠା କରନ୍ତିନାହିଁ । ଶୋଷକ ପଟକୁ ଆଉଜନ୍ତି ନାହିଁ । ସେ ବି ବେଶୀଦିନ ରହନ୍ତିନାହିଁ । ତାଙ୍କ ପଛେ ସେ କାମ,ଆଉ ତାର ଆଭିମୁଖ୍ୟ,ସବୁ ବଦଳି ଯାଏ ।'

'-ଶୋଷିତ ଆଦିବାସୀ ଆଉ ତା'ର ଶୋଷକର ପ୍ରକୃତ ସ୍ୱରୂପ କ'ଣ ?'

ଏଥର ଏଇ ପ୍ରଶ୍ନଟି ଶୁଣି ଟିକିଏ ନରମି ଯାଇଥିବା ଗୋପୀବାବୁଙ୍କ ମୁହଁଟି, ହଠାତ୍ ଦାଉଦାଉ ହୋଇ ଜଳିଉଠିଲା । ଅତଳ ଗହୀରର ଅନୁଭୂତି ସତେ କି ଆଲୋଡ଼ିତ ହେଲା । ତାଙ୍କର ଦୀପ୍ତ ମୁହଁରୁ ଟାଇଁ ଟାଇଁ ହୋଇ ବାଟୁଳି ମାରିଲା ପରି ଉଚ୍ଚାରିତ ହେଲା ଅଧିବେଶନର ଶେଷ ବକ୍ତବ୍ୟ ।

'ସମୟ ଅତିକ୍ରାନ୍ତ ହେଲାଣି । କେବଳ ଗୋଟିଏ କଥାରେ ବୁଝେଇଦିଏ । ଠେକୁଆ କି ଜିଆଦଙ୍କର ଗୋଠ ଥାଏ ମାତ୍ର ମେଣ୍ଟ ନଥାଏ । କିନ୍ତୁ ବଳିଆ କୁକୁର ଯେ ସେମାନଙ୍କୁ ଗୋଡ଼େଇ ଗୋଡ଼େଇ ପୁଳା ପୁଳା କରି ଖାଏ, ତାଙ୍କରି ମେଣ୍ଟ ଥାଏ ।'

'ଏଥିରୁ ଆକ୍ରମିତ ଆଦିବାସୀ ଆଉ ତାର ଶୋଷକର ଅତ୍ୟାଚାରର ସ୍ୱରୂପ ଜାଣିପାରିବ ।'

ହଁ ସେହି ଶୋଷକର ନଗ୍ନ ଆକ୍ରମଣର ଅତ୍ୟାଚାରରୁ ଝରିଥିବା, ରକ୍ତଭିଜା ଲେଖନୀରେ ରୂପାୟିତ ହୋଇଛି ତାଙ୍କର କ୍ରାନ୍ତିକାରୀ ଉପନ୍ୟାସ 'ପରଜା' ଆଉ 'ଅମୃତର ସନ୍ତାନ' ଏବଂ 'ଶିବଭାଇ'ର ଜୀବନୀ ଗାଥା ।

ମୁଁ ସେଦିନ ସନ୍ଧ୍ୟାରେ ଗୋପୀବାବୁଙ୍କଠାରୁ ବିଦାୟ ନେଇ ଯାଇଥିଲି ସୂଚନା ଭବନକୁ । ସେଠାରେ ବଙ୍ଗୀୟ ସାହିତ୍ୟିକ ଗୋଷ୍ଠୀଙ୍କୁ ସମ୍ବର୍ଦ୍ଧନା ଦିଆଯାଉଥିଲା । ସେହି ସାହିତ୍ୟିକମାନେ ଗୋଟିଏ ସ୍ୱରରେ କହିଲେ, 'ଆଧୁନିକ ଓଡ଼ିଆ ସାହିତ୍ୟର କିଛି ଦିଗ ଉଜ୍ଜଳ,ମାତ୍ର ଆଦିବାସୀ ଜୀବନ ଚିତ୍ରଣରେ ଶ୍ରୀ ଗୋପୀନାଥ ମହାନ୍ତିଙ୍କୁ ଅତିକ୍ରମ କଲାପରି ଲେଖକ ବର୍ତ୍ତମାନ ବଙ୍ଗଳା ସାହିତ୍ୟ ଜଗତରେ ନାହାନ୍ତି ।'

କେବଳ ବଙ୍ଗଳା ସାହିତ୍ୟ ତୁଳନାରେ କାହିଁକି, ଆଧୁନିକ ବିଶ୍ୱ ସାହିତ୍ୟରେ ମଧ୍ୟ ଭାରତୀୟ ତଥା ଗୋପୀବାବୁଙ୍କର ରଚନା ଭଳି ସୃଷ୍ଟି ବିରଳ ।

ହଁ ଏତିକିବେଳେ ମୋ ଆଖିଆଗରେ ଝଲସି ଉଠିଲା ଗୋପୀବାବୁଙ୍କ ସେହି ଦୀପ୍ତ ଆଉ ଦୃପ୍ତ ମୁହଁଟି, କଣ୍ଠରେ ତାଙ୍କର ଆତ୍ମ ପରିଚୟର ଉଦ୍‌ଘୋଷଣା ।

"ମା ଦସୁ ପ୍ରାସକା ଗୋପୀନାଥ । ମୁଁ ହେଉଛି କନ୍ଧ କୁଳରେ, ପ୍ରାସକା ବଂଶରେ ଜାତ ଗୋପୀନାଥ ।"

('ସମଦୃଷ୍ଟି'-୧୬-୩୧ଜୁଲାଇ-୨୦୦୭) 

# ଗୋପୀବାବୁ

# ଅନୁଭୂତିର ଏକ ବିଚିତ୍ର ପସରା

ସେଇ ସୁନେଲୀରଙ୍ଗ ମଖା ଅପରାହ୍‌ଣ । ଗୋପୀ ବାବୁଙ୍କ ବୈଠକଖାନା ଆଗରେ ମାଧବୀଲତାର କୁଞ୍ଜଟି ମଣ୍ଡି ହୋଇଯାଇଛି ଝିକିଝିକି ହଳଦିଆ ଫୁଲର ଛାଉଣୀରେ । ପିଆଲା ପରେ ପିଆଲା ଚାହାର ପରଶା ଭିତରେ ଯେମିତି ବିସ୍ମୃତିର କଠିନ ଆସ୍ତରଣ ସବୁ ତରଳି ବହି ଚାଲିଛି ଲାଭାର ଫୁଆର ପରି । ସୁପ୍ତ ଆଗ୍ନେୟଗିରିର ନିରବଛିନ୍ନ ଉଦ୍‌ଗୀରଣ ପରି ବହି ଚାଲିଛି ଗୋପୀବାବୁଙ୍କ କାହାଣୀର ଅଫୁରନ୍ତ ପ୍ରବାହ ।

'କୋରାପୁଟ ଜିଲ୍ଲାରେ, ମୋର ଚାକିରୀକାଳର କିଛି ପହିଲିବର୍ଷା । ଏହି ସମୟରେ ମୋର ସମ୍ପର୍କ ଟିକିଏ ଘନିଷ୍ଠ ହୋଇଯାଇଥିଲା ଉପରିସ୍ଥ ହାକିମ ଏସ୍.ଡି.ଓ.(ସବ୍‌ଡିଭିଜନାଲ ଅଫିସର)ଙ୍କ ସହିତ । ସେହି ଅଫିସର ମୋକଦ୍ଦମା ବା କେସ୍‌ର ରାୟ ଲେଖିବାରେ ଟିକିଏ ଅପଟୁ ଥିଲେ । ତେଣୁ ତାଙ୍କର ବହୁ ରାୟ ଉଚ୍ଚ ନ୍ୟାୟାଳୟରେ ଖାରଜ ହୋଇଯାଇଥିଲା । ମୁଁ ଟିକିଏ ସହାନୁଭୂତି ଦେଖାଇ ତାଙ୍କର କେସ୍‌ର ରାୟ ସବୁ ଲେଖିଦିଏ । ଏହି ସବୁ ଉଚ୍ଚ ନ୍ୟାୟାଳୟରେ କାଏମ ରହିଲା । ତେଣୁ ତାଙ୍କ ସହିତ ମୋର ସମ୍ପର୍କ ଆହୁରି ଟିକିଏ ଅନ୍ତରଙ୍ଗ ଆଉ ନିବିଡ଼ ହୋଇଗଲା ।' ଏହା କହି ଗୋପୀବାବୁ ଟିକିଏ ନୀରବ ରହିଗଲେ ।

' ତା'ପରେ ?' ମୁଁ ପଚାରିଲି...

ଗୋପୀବାବୁଙ୍କ ମୁହଁଟି ଉଜ୍ଜ୍ୱଳି ଉଠିଲା, ଟିକିଏ କୌତୁକ ଆଉ ଆମୋଦର ପରଶରେ । ସେ ଅତ୍ୟନ୍ତ ରସାଣିତଭାବେ ବର୍ଣ୍ଣନା କରିଚାଲିଲେ, 'ବୁଝିଲ ! ତା'ପରେ କିଛି ଅଘଟଣ ଘଟିଗଲା; ଯେତେବେଳେ ଖୋଦ୍ ଓଡ଼ିଶା ସରକାରଙ୍କ ଦପ୍ତରରୁ ଏସ୍.ଡି.ଓ ସାହେବଙ୍କ ଲିଖିତ ମୋର ଚରିତ୍ର ପତ୍ରର କିୟଦଂଶ ଡାକରେ ଆସି ପହଞ୍ଚିଲା । ତାହା ଦେଖି ମୁଁ ହତବାକ୍ ହୋଇଗଲି । ସେଥିରେ ଲେଖାଥିଲା ଯେ, 'ତାଙ୍କର (ଗୋପୀନାଥ ମହାନ୍ତିଙ୍କ) ରାୟ ଲେଖାରେ କିଛି ଭୁଲ ଭଟକା ରହିଯାଇଛି । ତେଣୁ ସେ ଏହି ବିଷୟରେ ଅଧିକ ଜାଗତିଆର ଆଉ ଯତ୍ନଶୀଳ ହେବା ଆବଶ୍ୟକ ।' ମୁଁ ଯାଇ





ଏସ୍.ଡି.ଓ.ଙ୍କୁ କହିଲି ଯେ, 'ମୋର ଲିଖିତ ସମସ୍ତ ରାୟ ତ' ଉଚ୍ଚନ୍ୟାୟାଳୟରେ କାଏମ ରହିଛି, ଆଉ ମୋ ପ୍ରତି ଏଭଳି ମନ୍ତବ୍ୟ କାହିଁକି ?' ତାହାର ଉତ୍ତରରେ ଏସ୍.ଡି.ଓ କହିଲେ ଯେ, 'ମୋର ଆପଣଙ୍କ ସହିତ ସମ୍ପର୍କ ଅତ୍ୟନ୍ତ ଘନିଷ୍ଠ ରହିଛି ଓ ରହିବ, ମାତ୍ର ମୁଁ ସବୁକ୍ଷେତ୍ରରେ ଆପଣଙ୍କୁ ପାରଦର୍ଶୀ ବୋଲି ଦର୍ଶାଇଥିଲେ, ଲୋକମାନେ ମତେ ପକ୍ଷପାତ ଦୋଷରେ ଦୋଷୀ କରିଥାନ୍ତେ । ସେ ଯାହାହେଉ, ଆଗାମୀବର୍ଷ ଆପଣଙ୍କର ଚରିତ୍ର ପତ୍ର ନିଶ୍ଚୟ ଅସାଧାରଣ ହେବ ।'

ହଁ ! ଗୋପୀବାବୁ ବହୁକ୍ଷେତ୍ରରେ ଅସାଧାରଣ ହିଁ ଥିଲେ । ଗୋପୀବାବୁ ଶିକ୍ଷାୟତନର ଶ୍ରେଣୀରେ ଅନେକ ସମୟରେ ପ୍ରଥମ ସ୍ଥାନ ହିଁ ଅଧିକାର କରୁଥିଲେ । ଆଉ ଏମ୍.ଏ.କ୍ଲାସରେ ଇଂରାଜୀ ସାହିତ୍ୟର ସର୍ବଶ୍ରେଷ୍ଠ କୃତି ଛାତ୍ର ଥିଲେ । ରାୟ ଲେଖିବାରେ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା । ହେଲେ ଏହାର ବହୁ ପରବର୍ତ୍ତୀକାଳରେ ୧୯୫୨ ସାଲରେ ତାଙ୍କର ଲିଖିତ କିଛି ରାୟ ଉଚ୍ଚ ନ୍ୟାୟାଳୟରେ ଖାରଜ ହୋଇଯାଇଥିଲା ।

ଏ ସମ୍ପର୍କରେ ବିଶିଷ୍ଟ ସମାଜସେବୀ ଓ ଭୂଦାନ କର୍ମୀ ରତନ ଦାସ କହୁଥିଲେ ଯେ, 'କୋରାପୁଟ ଜିଲ୍ଲାର ରାୟଗଡ଼ା ଆଉ ଗୁଣୁପୁର ସବ୍‌ଡିଭିଜନ୍‌ର ବହୁ ଜମି ଆଦିବାସୀଙ୍କ ହାତରୁ ଅଣଆଦିବାସୀଙ୍କ ପାଖକୁ ହସ୍ତାନ୍ତରିତ ହୋଇ ଯାଇଥିଲା, ସୁପରିକଳ୍ପିତ ଶୋଷଣ ଏକ ଚକ୍ରାନ୍ତ ରୂପରେ । ତେଣୁ କୋରାପୁଟ ଜିଲ୍ଲାର ବିଶିଷ୍ଟ ନେତା ବିଶ୍ୱନାଥ ପଟ୍ଟନାୟକ, ମୁଁ ଆଉ କେତେକ ସାଥୀ ଭୂ-ସତ୍ୟାଗ୍ରହ ଆରମ୍ଭ କରିଦେଲୁ । ସରକାର ଟିକିଏ ଆତଙ୍କିତ ହେଲେ,ମାତ୍ର ଅତି ଚତୁରତାର ସହ ଆନ୍ଦୋଳନ ପଣ୍ଡ କରିବା ପାଇଁ ଶ୍ରୀ ଗୋପୀନାଥ ମହାନ୍ତିଙ୍କୁ ସ୍ପେଶାଲ ଅଫିସର କରି ପଠାଇଲେ । ଗୋପୀବାବୁଙ୍କୁ କ୍ଷମତା ଦିଆଯାଇଥିଲା ଯେ, ସେ ସମସ୍ତ ବେଆଇନ ଜମି ହସ୍ତାନ୍ତରର ଅନୁସନ୍ଧାନ କରି ଉପଯୁକ୍ତ କ୍ଷେତ୍ରରେ ପୁନରାୟ ଜମିକୁ ଆଦିବାସୀ ହାତକୁ ଫେରାଇ ଦେବେ । ଗୋପୀବାବୁଙ୍କୁ ଆଦିବାସୀ ଗଭୀରଭାବେ ବିଶ୍ୱାସ କରେ । ତେଣୁ ଭୂ-ସତ୍ୟାଗ୍ରହ ଆନ୍ଦୋଳନ ବନ୍ଦ ହୋଇଗଲା । ଗୋପୀବାବୁ ଅତ୍ୟନ୍ତ ଉତ୍ସାହ ସହକାରେ ଗାଁ ଗାଁ ବୁଲି ଦରଖାସ୍ତ ସଂଗ୍ରହ କଲେ, ଆଉ ଅନୁସନ୍ଧାନ କରି ବହୁ ଜମି ଆଦିବାସୀଙ୍କୁ ଫେରାଇଦେଲେ । ସେ ପ୍ରାୟ ସବୁ କ୍ଷେତ୍ରରେ ଆଦିବାସୀଙ୍କ ସପକ୍ଷରେ ହିଁ ରାୟ ଦେଉଥିଲେ । ଏଥିରୁ କିଛି ରାୟ ଉଚ୍ଚନ୍ୟାୟାଳୟରେ ବାତିଲ ହୋଇଗଲା । ଫଳରେ ଗୋପୀବାବୁଙ୍କର ପଦୋନ୍ନତି ବନ୍ଦ ହେଲା । ସରକାର ଗୋଟିଏ ଢେଲାରେ ଦୁଇଟି ଚଢ଼େଇ ଶିକାର କରିଦେଲେ । ଏକପକ୍ଷରେ ଆଦିବାସୀଙ୍କ ଭୂ-ସତ୍ୟାଗ୍ରହ ବନ୍ଦହେଲା, ଆଉ ଅନ୍ୟପକ୍ଷରେ ଆଦିବାସୀଙ୍କ ସ୍ୱାର୍ଥକୁ ଜଗୁଥିବା ଗୋପୀବାବୁଙ୍କର ପଦୋନ୍ନତି ମଧ୍ୟ ବନ୍ଦହେଲା ।

ଏତିକି ଥାଉ । ପୁଣି ମୂଳକଥାକୁ ଫେରିଆସିବା । ସେହି ମୂଳ କଥାର ଖିଅଟି ଧରି, ମୁଁ ଗୋପୀବାବୁଙ୍କୁ ପଚାରିଲି, 'ଆପଣଙ୍କୁ କ'ଣ ପରବର୍ତ୍ତୀ ବର୍ଷ ଅସାଧାରଣ ଚରିତ୍ର ପତ୍ର ମିଳିଥିଲା ?'

ଅନୁଶୋଚନାର ଟିକିଏ ମାତ୍ର ଚିହ୍ନ ନାହିଁ । ଗୋପୀବାବୁଙ୍କ ମୁହଁରେ ଅଧଫୁଟା ସ୍ମିତହାସ ଆଉ ଆମୋଦିତ କଣ୍ଠରେ କୌତୁହଳତାର ଅଭ୍ୟାସରେ ସେ କହିଚାଲିଛନ୍ତି, 'ତାହା ଗୋଟିଏ ରସିକତାର କାହାଣୀ । ହଠାତ୍ ଦିନେ ଏସ୍.ଡି.ଓ. ସାହେବଙ୍କର ଚାମ୍ବରକୁ ମତେ ଡକରା ପଡ଼ିଲା । ସେଠି ଉପସ୍ଥିତ ଥାନ୍ତି ଏସ୍.ଡି.ଓ. ଓ ତାଙ୍କର ଅତି ବିଶ୍ୱସ୍ତ ଷ୍ଟେନୋ । ମୁଁ ପହଞ୍ଚି ବସିବା ମାତ୍ରେ ଷ୍ଟେନୋଟି ସେ ବର୍ଷର



ମୋର ଲାଗି ଲିଖିତ ଚରିତ୍ର ପତ୍ରଟି ପଢ଼ି ଶୁଣାଇଦେଲା । ମୋଟାମୋଟି ପ୍ରାୟ ଭଲ ଥିଲା । ଏହାପରେ ଏସ୍.ଡି.ଓ.ଙ୍କର ବଦଳି ହୋଇଗଲା । ଏହାର ଅନେକଦିନ ପରେ ମୋର ସମସାମୟିକ ଅଫିସରଙ୍କର ପଦୋନ୍ନତିର ତାଲିକା ବାହାରିଲା । ସେହି ତାଲିକାରେ ମୋର ନାମ ନଥିଲା । ମୁଁ ଟିକିଏ ଆଚମ୍ବିତ ହେଲି, ମାତ୍ର ଏହାର ସମସ୍ତ ଗୂଢ଼ ରହସ୍ୟ ଉଦ୍‌ଘାଟିତ ହୋଇଗଲା ଯେତେବେଳେ ଖୋଦ୍ ଓଡ଼ିଶା ସରକାରଙ୍କ ଦପ୍ତରରୁ, ସେହି ପୁରୁଣା ଏସ୍.ଡି.ଓ.ସାହେବଙ୍କର ମୋରଲାଗି ଲିଖିତ ଚରିତ୍ରପତ୍ରର କିୟଦଂଶ ଡାକରେ ଆସି ପହଞ୍ଚିଲା । ସେଥିରେ ଲେଖାଥିଲା ଯେ, 'ସେ (ଗୋପୀନାଥ ମହାନ୍ତି)ଜଣେ ଅତ୍ୟନ୍ତ ଏକବାଗିଆ, ଜିଦ୍‌ଖୋର ଆଉ ମନୁଆ ଅଫିସର ।' ଏହା କହିସାରି ଗୋପୀବାବୁ ଖିଲିଖିଲି ହୋଇ ହସରେ ଲୋଟି ପଡ଼ିଲେ ଠିକ୍ ଛଳଛଳ ହୋଇ ବହିଯାଉଥିବା ଝରଝର ଝରଣାର ନିନାଦ ପରି । ସେହି ଉଚ୍ଛୁଳା ହସର ତରଙ୍ଗ ସାରା ବୈଠକଖାନାକୁ କିଛିକାଳ ଧରି ଆଚ୍ଛନ୍ନ କରି ରଖିଥିଲା ।

ଚରିତ୍ରପତ୍ରରେ ଲିଖିତ ମନ୍ତବ୍ୟ ବିଷୟରେ ମୁଁ ଗୋପୀବାବୁଙ୍କୁ ପଚାରି ନାହିଁ । ମାତ୍ର ଏହାର ଉତ୍ତର ପାଇ ପାରିଥିଲି ବିଶିଷ୍ଟ ସମାଜବାଦୀ ରତନ ଦାସଙ୍କର ବକ୍ତବ୍ୟରୁ । ସେ କହୁଥିଲେ,'ଗୋପୀବାବୁ ଲୋକଦେଖାଣିଆ କଜଳପାତିଆ ଭଲଲୋକ ନଥିଲେ । ତେଣୁ ତାଙ୍କର ଉପରିସ୍ଥ କର୍ମଚାରୀମାନେ ତାଙ୍କୁ ଭଲ ପାଉନଥିଲେ । ତାଙ୍କର ବିରୁଦ୍ଧରେ ଅଭିଯୋଗ ଯେ, ସେ 'ତଥାକଥିତ ବାବୁ'ଗୋଷ୍ଠୀରୁ ବାହାରି ଯାଇ ଲେଙ୍ଗୁଟିପିନ୍ଧା କନ୍ଧ, ପରଜା, ସଉରାଙ୍କ ସଙ୍ଗେ ମିଶୁଥିଲେ ଆଉ ସରକାରଙ୍କର ପୁରୁଣା ଅଚଳଶାସନ ଯନ୍ତ୍ରଟିକୁ, ସେମାନଙ୍କ ସେବାରେ ଲଗାଇ ଦେଉଥିଲେ ତେଣୁ ସରକାରଙ୍କ ସ୍ଥାଣୁ ଶାସନ ଯନ୍ତ୍ରରେ କିଛି ଅବ୍ୟବସ୍ଥା ସୃଷ୍ଟି ହେଉଥିଲା ।'

ଗୋପୀବାବୁଙ୍କ ସହ କଥାର ସୂଅ ଭିନ୍ନ ମୋଡ଼ ଧରିଛି । ମୁଁ ପଚାରିଥିଲି ଜମି ହସ୍ତାନ୍ତରର କଥା । ତାଙ୍କ ଆଖିଆଗରେ ନାଚିଉଠିଛି ସେହି ଢେଉ-ଢେଉକା ପାହାଡ଼ ତଳି ଉପତ୍ୟକାର ଧାରେ ଧାରେ ଅଳସଗତିରେ ବହିଯାଉଥିବା ଝରଣା ଅଥବା ନଦୀର ନିର୍ମଳ କାଚକେନ୍ଦୁ ପରି ସୂଅଟି । ତାହାରି ପାଖେପାଖେ ଝୋଲାଭୂଇଁରେ ଦିଗନ୍ତବିସ୍ତାରୀ କ୍ଷେତ ସବୁ ଉଭାରହିଛି । ଗୋପୀବାବୁ କହି ଚାଲିଛନ୍ତି,'ଯେଉଁଠି ଦେଖିବ ଆଖିଦୁରୁଶିଆ ଧାନଗହୀର କୋଶକୁ କୋଶ ଲମ୍ବିଛି, ସେଇଠି ଦେଖିବ ଶୁଣ୍ଢି ସାହୁକାର, ମହାଜନ ସେମାନେ ଓଡ଼ିଆ ହୁଅନ୍ତୁ ଅଥବା ତେଲେଙ୍ଗା; ସେମାନେ ବାହାର ସଭ୍ୟତାର ଉତୁରା ପେଜପରି, ଲୋଟା କମ୍ବଳ ଧରି ବଣକୁ ଆସିଥିଲେ, ଆଜି ସବୁଜମିର ମାଲିକ । ଶୁଣ୍ଢିମାନେ ମଦଯୋଗାଇ ଜମି କଲେ ଆଉ କିଏ ଦେଢ଼ୀ ମହାଜନୀ କରି ଜମିସବୁ ଦଖଲ କଲେ । ଆଉ ଯେଉଁମାନେ ଅଧିକାରୀଙ୍କ ଶରଣିଆ, ତାଙ୍କର ତ ସାତ ଖୁଣ ମାଫ୍ ।'

'କେଉଁମାନେ ଅଧିକାରୀଙ୍କ ଶରଣିଆ ?'

ଗୋପୀବାବୁଙ୍କ ନରମ ଗଳାଟି ଟିକିଏ ରୁକ୍ଷ ହୋଇଗଲା । ସେଥିରେ ଭରି ରହିଥିଲା ବିଦ୍ରୋହ ଆଉ ପ୍ରତିବାଦର ସ୍ୱର । ତାଙ୍କର ଭରା ସ୍ମିତହାସର ମୁହଁଟି ଯେମିତି ବିଷାଦ ମେଘରେ ଢଙ୍କା ହୋଇଗଲା । 'ଆଉ କେଉଁମାନେ ? ସେହି ଗାଁର ମହାଜନ,ସାହୁକାର, ବେପାରୀ ଯେଉଁମାନେ ଆଦିବାସୀର ଶୋଷକ । ଅଧିକାରୀଙ୍କ ପାଖରେ ସେହି ଶୋଷକ ଠିଆହୋଇ ପାନ, ସିଗାରେଟ କି ଚାହା ବଢ଼େଇ ଦେବାର ଦେଖିଲେ, ଆଦିବାସୀର ମୁହଁରେ ଯେମିତି ତାଲା ପଡ଼ିଯାଏ । ମୁଁ ଏହା





ନିଜର ଅଭିଜ୍ଞତାରୁ କହୁଛି । ଆଉ ସେହି ଶୋଷକର ବୋଲରେ, ଅଧିକାରୀ ବା ତାଙ୍କର ତଳିଆ କର୍ମଚାରୀ କିଛି କାଗଜ କାଢ଼ି ଲେଖି ପକାଇଲେ ଆଦିବାସୀର ଛାତି ଦବିଯାଏ । କହିବା କଥା ଦୂରେ ଥାଉ, ତାର ମୁଣ୍ଡ ଗୋଳମାଳ ହୋଇଯାଏ ।

କାହିଁକି ଜାଣିଛ ?'

' ନା, ତ' ।

'ଏହା ଆସିଛି ଅତୀତର ରକ୍ତମୟ ସଂଘର୍ଷ ଆଉ ତିକ୍ତ ଅନୁଭୂତିରୁ । ଏହି ରକ୍ତାକ୍ତ ସଂଘର୍ଷରେ ପରାଜିତ ହୋଇ ଆଦିବାସୀ ବାଛିନେଇଛି ଅପନ୍ତରା ଆଉ ଅରଣ୍ୟଭୂଇଁକୁ ତାର ଆଶ୍ରୟସ୍ଥଳୀ ରୂପେ । ହେଲେ ନିସ୍ତାର କାହିଁ ?'

'ଆଉ କିପରି ଭାବେ ଆଦିବାସୀ ଶୋଷିତ ହୁଏ ?'

ଗୋପୀବାବୁଙ୍କ ମୁହଁରୁ ବିଷାଦର ମେଘ କଟିଯାଇ ଫୁଟିଉଠିଛି ସୂର୍ଯ୍ୟକିରଣର ଝଲକ ପରି ନରମ ହସର ରେଖାଟିଏ । ମନରେ ଗୁମୁରି ଉଠିଛି ଚଇତି ପରବର ଉଛୁଳା ବଇଁଶୀ ସୁରର ମୂର୍ଚ୍ଛନା ଭିତରେ, ଆଦିବାସୀ ତରୁଣ-ତରୁଣୀଙ୍କର ଲାସ୍ୟଭରା ନୃତ୍ୟର ଅପରୂପ ଛନ୍ଦପାତ । ହେଲେ ସେହି ଭରା ପ୍ରସନ୍ନତାର ମୁହଁଟିରେ ପୁଣି କେଉଁ ବିଷର୍ଣ୍ଣତାର ବଉଦ ଛାଇ ହୋଇଗଲା । ସେ କହି ଚାଲିଛନ୍ତି, 'ଚଇତି ପରବର ଉତ୍ସବ-ସାରା ମାଳଭୂମି ଆନନ୍ଦର କୋଳାହଳରେ ମୁଖରିତ । ଅଜଣା ଉନ୍ମାଦନା ଛୁଇଁଯାଇଛି ସଭିଙ୍କର ହୃଦୟତନ୍ତ୍ରୀ । ପାହାଡ଼ ଉହାଡ଼ରେ ରାତି ରାତି ଧରି ଡହ ଡହ ଜଳୁଥିବା ନିଆଁର ଚାରିପାଖେ ନାଗର ଆସର । ଏହି ଆସରର ଉଲ୍ଲାସ ଭିତରେ କନ୍ଧ ବା ପରଜାର ଜୁଆନ ଟୋକାଟି ତାର କନିଆଁ ବାଛିଲା ହୃଦୟର ପୁଲକ ଅଜାଡ଼ି ଦେଇ । କନିଆର ବାପ ମାଗିଲା ଝୋଲା (କନ୍ୟା ସୁନା)ଟଙ୍କା ।

ତାର ନୁଖୁରା ମୁଣ୍ଡ ଆଉ ଅଭେଙ୍କା ଦେହଟା ଛଡ଼ା, ତାର ଆଉ କି ସମ୍ପତ୍ତି ଅଛି । ଆହା ! ସେହି ନିପଟ ଶୁଖିଲା ଦେହଟିକୁ ଦେଲା ସାହୁକାର ପାଖେ ଗୋତି ପଣରେ ବାନ୍ଧି । ସେ ସାହୁକାର ପାଖକୁ ଯାଇ କହିଲା, ହେ ମହାପ୍ରୁ ! ଉପରେ ଧରମ, ତଳେ ଧରତୀ । କଥା ଭାଙ୍ଗିବି ନାହିଁ । ଦେ ଟଙ୍କା' ସାହୁକାରକୁ ମିଳିଗଲା ବିନାଦରମାରେ ମୂଲିଆ । ମାସକୁ ଖୋରକି କିଛି ମାଣ୍ଡିଆ । ବରଷେ ମୁହଁ ମାଡ଼ି କାମକଲେ ମୂଳକୁ ପଇଠ ଯାଏ କୋଡ଼ିଏ ଟଙ୍କା । (ସେଠି କାହାନ୍ତି ସରକାର ଯେ, ତାକୁ କନିଆଁ ଯୋଗେଇବେ) ସାରା ଜୀବନ ଗୋତିପଣରେ କଟିଯାଏ ।'

'ଆଉ ଯାହାର ଜମି ଅଛି ?' ମୁଁ ପଚାରିଲି ।

'ବରଷା ଦିନ । ଡିରୋଟ ସମୟ । ଘରେ ସମସ୍ତ ଖାଦ୍ୟ ସରିଛି । ସରକାରଙ୍କ ଋଣ ଫାଇଲ ଯାହାଥିଲା, ଫେରିନାହିଁ । ନାନା ଅସୁବିଧା ସର୍ତ୍ତରେ ଗାଁ ମହାଜନଠୁ ଋଣ ଆଣେ, ଆଉ ଚୁକ୍ତି କରିଦିଏ ତାହାର ଜମିର ସମସ୍ତ ଫସଲ ବିକିବ କେଉଁ ଶସ୍ତାଦରରେ । ଫସଲ ଅମଳ ସରିଛି, ଦର ଚଢ଼ା ଅଛି । ସରକାରୀ ଲୋକେ ଆସି କହିଲେ, ଫସଲ ବିକିବୁ ?' 'ନାହିଁ ମହାପ୍ରୁ ! ବିକି ସାରିଛି ।' ଥରେ ବଚନ ଦେଇଛି, ପଥରର ଗାର । ଏହି ଶୋଷଣର ପ୍ରକ୍ରିୟା ଭିତରେ ତାର ଖଣ୍ଡିଏ ଖଣ୍ଡିଏ ଜମି ଚାଲିଯାଏ ମହାଜନର ହାତକୁ ।'

'ଆଉ କେଉଁ ପ୍ରକାରର ଶୋଷଣ ଅଛି ।'

'ଶୋଷଣର ଅନ୍ୟ ଗୋଟିଏ ଭୟଙ୍କର ରୂପ ହେଉଛି ମଦ । ସେହି ମଦ ପୁଣି ଆଦିବାସୀଙ୍କ ଚଳଣିର ଗୋଟିଏ ଅଂଶ । କମ୍ପାନୀ ମଦ ଛଡ଼ା ଯେଉଁ ରନ୍ଧା ମଦ ଆଦିବାସୀ ତାର ପୁନିଅ ପର୍ବରେ ବ୍ୟବହାର କରେ, ତାହା ବିଭିନ୍ନ କିସମର । ଯିମିତି ପଖାଳ ସଢ଼େଇ ମଦ-ହାଣ୍ଡିଆ, ମହୁଲ ବତୁରାଇ ଆଉ ରାନ୍ଧି ମଦ-ମହୁଲି, ମାଣ୍ଡିଆ ରାନ୍ଧି ସଢ଼େଇ ମଦ-ରନ୍ଧା, ସୁଆଁ ରାନ୍ଧି ସଢ଼େଇ ମଦ-ମକଦମ, ଔଷଧ ପକାଇ କଡ଼ା କରିଥିବା ମଦ-ତୋଣ୍ଡମ, ଖଜୁରୀ ମଦ-ତାଡ଼ି, ସଲପ ରସ ମଦ-ସଲପ, ଆଉ ନାନାପ୍ରକାର ମଦ' ।

'ଏଥିରେ ଶୋଷଣର ଭୟାବହତା କିପରି ପ୍ରକଟିତ ହୁଏ ?'

ଗୋପୀବାବୁଙ୍କର କଣ୍ଠରେ ବ୍ୟଥାତୁର ବେଦନାର ସ୍ୱର । ଯେମିତି ଅକୁହା ଯନ୍ତ୍ରଣାରେ ତାଙ୍କର ଅନ୍ତର ବିଳପି ଉଠୁଛି । ସେ କହୁଛନ୍ତି, 'ହଁ ସେହି ମଦର ଭୟାବହତା ସମସ୍ତ ବର୍ଣ୍ଣନାର ବାହାରେ । ଏହି ମଦର କଥା ଶୁଣି ମୋର ଯେମିତି ହୃତ୍‌କମ୍ପ ଜାତ ହୋଇଯାଉଛି । ତୁମେ ଜାଣିଛ କି ନାହିଁ, ଆଦିବାସୀର ସମସ୍ତ ଆୟର ଗୋଟିଏ ମୋଟା ଭାଗ ଚାଲିଯାଏ ଏହି ମଦ କିଣିବାରେ । ଖାଉ ଖାଉ ନିଶାଖୋରି ପ୍ରକୃତି ବଢ଼େ ଯେ, ମଦପିଇବା ଆଶାରେ ଶାଗ-ମାଛ ଦରରେ, ତାର ସମସ୍ତ ସମ୍ପତ୍ତି ଉଜାଡ଼ି ଦିଏ, ବନ୍ଧା ଦିଏ ଅବା ବିକିଦିଏ । ମୁଁ ପ୍ରତ୍ୟକ୍ଷ ଭାବେ ଦେଖିଛି, କିଛିବର୍ଷ ତଳେ ନିୟମଗିରି ପାହାଡ଼ରେ ଗୋଟିଏ ବୋତଲ ମଦ ବଦଳରେ ଡଙ୍ଗରିଆ କନ୍ଧ କେତୋଟି ଫଳଭରା କମଳା ବା ପଣସ ଗଛ, ଗୋଟିଏ କଦଳୀ କିମ୍ବା ସପୁରୀ କ୍ଷେତ, ବରଷକ ଲାଗି ଦଖଲ ବନ୍ଧା ଦେଇଦିଏ । ଏହି ମଦ ହିଁ ଆଦିବାସୀକୁ କାଳ କାଳ ଧରି ଗରିବ ଆଉ ନିଃସ୍ୱ କରି ରଖିଥାଏ ।'

'-ଆଦିବାସୀ ତ ପ୍ରକୃତିର ସନ୍ତାନ । ତାର ଜୀବନର କେଉଁ ଦିଗଟି ଆପଣଙ୍କୁ ଆକର୍ଷିତ କରେ ?'

ପ୍ରଶ୍ନଟି ଶୁଣି ଗୋପୀବାବୁ ଟିକିଏ ନୀରବ ହୋଇ ରହିଛନ୍ତି । ଶେଷ ଶ୍ରାବଣର ପାହାଡ଼ଘେରା ଆକାଶରେ ଘନ ଅନ୍ଧାରିଆ ନିଝୁମ ବରଷା ଆଉ ଉଜ୍ଜ୍ୱଳ ସୂର୍ଯ୍ୟ ଆଲୁଅର କ୍ରମ ଆବର୍ତ୍ତିତ ଲୁଚକାଳି ପରି, କ୍ଷଣକୁ କ୍ଷଣ ଗୋପୀବାବୁଙ୍କର ଉଚ୍ଛୁଳା ମୁହଁର ଅଭିବ୍ୟକ୍ତି ବଦଳି ଯାଉଛି । ସେହି ଗଭୀର ଅନୁଭୂତିର ଆବର୍ତ୍ତିତ ଉଚ୍ଛ୍ୱାସ ମଧ୍ୟରେ ପ୍ରକାଶ ପାଇ ଉଠିଛି ଆଦିବାସୀ ଚରିତ୍ରର ନିଜସ୍ୱ ସ୍ୱରୂପଟି ଗୋପୀବାବୁଙ୍କ ପ୍ରକାଶର ଅପରୂପ ଭଙ୍ଗୀରେ । ସେ କହି ଚାଲିଛନ୍ତି, 'ପାହାଡ଼ ଉପରେ ଘନ ବନାନୀର ରଙ୍ଗ ପରି, ଆଦିବାସୀ ପ୍ରକୃତି ସହିତ ଏକାକାର ହୋଇ ଚଳିଆସିଛି । ତେଣୁ ସେ ପ୍ରକୃତି ପରି ନିର୍ବିକାର ଆଉ ଉଲଙ୍ଗ । ସଭ୍ୟତାର ମୁଖା ପିନ୍ଧି, ପୋଷାକର ଝଲସ ତଳେ ଦେହର ଯାଦୁ ଆଉ ମନର କପଟକୁ ଲୁଚାଇ ଶିଖିନାହିଁ, ତେଣୁ ସେ ଅସଭ୍ୟ । ସେଠି ଘା ପବନ ବାଜି ଶୁଖେ, ଦେହ ଖରା ଓ କାକର ଖାଇ ଟାଣହୁଏ । ମନର ବେଦନା ପ୍ରକାଶ ପାଇ ନିକାଶ ହୋଇ ଅରଣ୍ୟର ମୁକ୍ତପବନରେ କାହିଁ ମିଳେଇ ଯାଏ । ଦୁଃଖି ସେଠି ଗାଁ ପୋଖରୀର ପଙ୍କ ପାଲଟେ ନାହିଁ । ପ୍ରକୃତିର ବିଶାଳ ଆନନ୍ଦ ମଣିଷର ହତାଶା ଉପରେ ତାର ଅମୀୟ ପରଶ ସିଞ୍ଚି ସବୁ ଭଲ କରିଦିଏ । ଦୁଃଖକଷ୍ଟରେ ଝଡ଼ ତୋଫାନରେ ମଧ୍ୟ ମଣିଷ ମନର କଅଁଳ ରାଗିଣୀ ଅବିରତ ବାଜୁଥାଏ । ଥମେ ନାହିଁ ।'

ଗୋପୀବାବୁଙ୍କ ମନ୍ତବ୍ୟ ଶୁଣି ମୁଁ ଅଭିଭୂତ ହୋଇ ଯାଇଥିଲି । ତାଙ୍କୁ ମୋର ଶେଷ ପ୍ରଶ୍ନଟି





ପଚାରିଲି ।

-'ଆଦିବାସୀ ସମସ୍ୟାର ସମାଧାନ କେଉଁଠି ?'

'ଆଦିବାସୀର ସମସ୍ୟା କେବଳ ଅର୍ଥନୈତିକ ନୁହେଁ । ତାହା ସାମାଜିକ, ଅର୍ଥନୈତିକ, ରାଜନୈତିକ, ଶିକ୍ଷା ଓ ସଂସ୍କୃତିଗତ; ଆଉ ଏସବୁର ମିଶାମିଶି । ତାର ଚଳଣିର ରୀତି ବି ନିଆରା, ତେଣୁ ତାର ସମସ୍ୟାର ସମାଧାନ ମଧ୍ୟ ଅଲଗା ହେବାକୁ ବାଧ୍ୟ ।'

'କିପରି ?'

ଦୀର୍ଘକାଳ ଧରି ଆଦିବାସୀର ସେବାରେ ଉତ୍ସର୍ଗୀକୃତ ଗୋପୀବାବୁଙ୍କର ଘଟଣାବହୁଳ ଜୀବନର ଅଭୁଲା ମୁହୂର୍ତ୍ତଗୁଡ଼ିକ ରୂପାୟିତ ହୋଇଛି, ତାଙ୍କର ଯୁଗାନ୍ତକାରୀ ଉପନ୍ୟାସ 'ପରଜା','ଅମୃତର ସନ୍ତାନ' ଆଉ 'ଅପହଞ୍ଚ'ରେ । ତାଙ୍କର ସମସ୍ତ ଜୀବନର ଅଭିଜ୍ଞତାର ନିର୍ଯାସ ଢାଳିଦେଇ ସେ କହୁଛନ୍ତି,'ତୁମେ କ'ଣ ଆଦିବାସୀର ଜୀବନଧାରା ସହିତ ପରିଚିତ ନୁହଁ ? ଆଦିବାସୀ ଭାବିବା ଦିଗଟା ଅଲଗା । ତାର ସ୍ନେହଶ୍ରଦ୍ଧା, ଆଉ ଶତ୍ରୁତାର ଭାବ ଦେଖାଇବାର ବାଗ ମଧ୍ୟ ଭିନ୍ନ । ସେ ବିଡ଼ି ଖଣ୍ଡକରେ ଖୁସି, ପଇସା ଦେଲେ ଛଳ କରିପାରେ । ସ୍ନେହ ପାଇଲେ ପଥର ତାଡ଼ିବ, ମୂଲ ଯାଚିଲେ କାମ ବି ନକରି ପାରେ । ତାର ସାମାଜିକ ଜୀବନର ଗତି ମଧ୍ୟ ଅଲଗା । ତେଣୁ ଯେଉଁମାନେ ତାର ଉନ୍ନତି ଲାଗି କାମ କରୁଛନ୍ତି, ସେମାନେ ପହିଲେ ସେହି ବ୍ୟକ୍ତିଟିକୁ ଚିହ୍ନିବା ଆବଶ୍ୟକ । ତାର ଶ୍ରଦ୍ଧା ଓ ବିଶ୍ୱାସର ଭାଜନ ହେବା ଦରକାର । ନିରୋଳା ସ୍ନେହରେ ତାର ହୃଦୟକୁ ଜିଣିବାକୁ ହେବ ।

ଛୋଟ ପିଲାଟିପରି ତାକୁ ଗୋଡ଼େ ଗୋଡ଼େ ଜଗିବାକୁ ହେବ । ତାର ଚାରିପାଖେ ଚାଲିଥିବା ଉଗ୍ର ଶୋଷଣର ଚକ୍ରାନ୍ତକୁ ନିର୍ଭୟରେ ପଦାରେ ପକାଇବାକୁ ପଡ଼ିବ । ତାକୁ ଶିକ୍ଷା ଦେବାକୁ ହେବ । ସାନ ପିଲାଟି ପରି ତାକୁ ପହଣ୍ଡି ମଣେଇ ଚଲେଇବାକୁ ପଡ଼ିବ । ତା'ହେଲେ ଯାଇ ଯୋଜନାର ଫଳ ତାହା ପାଖେ ପହଞ୍ଚି ପାରିବ ।' ଗୋପୀବାବୁଙ୍କ ବକ୍ତବ୍ୟ ଶେଷ ହେଲା ।

ମୁଁ ତାଙ୍କଠାରୁ ବିଦାୟ ନେଇ ଆସିଲି । ହେଲେ ମୋର ମନଭିତରେ ଝଟକି ଉଠିଲା, ସେହି ଅନୁଭୂତିର ବିଚିତ୍ରତା ମଧ୍ୟରେ ଗୋପୀବାବୁଙ୍କ ଉଚ୍ଛୁଳା ଅଭିବ୍ୟକ୍ତିର ପ୍ରାଣବନ୍ତ ମୁହଁଟି । ଆଉ ତାରି ଭିତରେ ଜ୍ୱଳନ୍ତ ଆଖି ମଝିରେ ଧପ୍ ଧପ୍ କରି ମଣି ଭଳି ଜଳି ଉଠୁଥିବ । କରୁଣାଦୀପ୍ତ ସ୍ନେହବୋଳା ଡୋଳା ଦୁଇଟି, ଯାହାକୁ ମୁଁ ସାଉଁଟି ନେଇ ନିବିଡ଼ ଭାବେ ସାଇତି ରଖିଛି, ମନର ଗମ୍ଭୀରାରେ କାଳକାଳ ଲାଗି ।

('ସମଦୃଷ୍ଟି'-୧୬-୩୧ ଅକ୍ଟୋବର-୨୦୦୭)



# ଭାଷା ସଂଗ୍ରାମ ଓ ନବ ଓଡ଼ିଶାର ସ୍ଥାପନା

ଓଡ଼ିଶାର ସ୍ୱାଧୀନତାର ୧୫୬୮ ସାଲର ଅବଲୁପ୍ତି ପରେ, କ୍ରମଶଃ ସଙ୍କୁଚିତ ହୋଇ ଓଡ଼ିଶାର ସୀମା ୧୮୦୩ ବେଳକୁ କ୍ଷୁଦ୍ର ଓଡ଼ିଶା ଡିଭିଜନର ୩ଗୋଟି ଜିଲ୍ଲା ଓ କେତେଗୋଟି ଗଡ଼ଜାତ ମଧ୍ୟରେ ଆବଦ୍ଧ ରହିଥିଲା । ଓଡ଼ିଆଭାଷାକୁ ନିର୍ବାପିତ କରିବା ପାଇଁ ୧୮୬୭ରୁ ୧୮୭୦ମଧ୍ୟରେ ଯେଉଁ ହୀନଚକ୍ରାନ୍ତ ସଙ୍ଗଠିତ ହୋଇଥିଲା, ତାହାର ବିରୁଦ୍ଧରେ ଗୌରୀଶଙ୍କର ଓ ଫକୀରମୋହନଙ୍କର ସଞ୍ଚାଳିତ ଆନ୍ଦୋଳନକୁ ରେଭେନ୍ସା ଓ ବୀମସ୍ ସାହେବଙ୍କର ଅକୁଣ୍ଠ ସମର୍ଥନ, ସମସ୍ୟାର ଆଶୁ ସମାଧାନ ଘଟାଇଥିଲା ।

ମାତ୍ର ଏଣେ ୧୫.୦୧.୧୮୯୫ରେ ମଧ୍ୟପ୍ରଦେଶ ସରକାରଙ୍କର ସମ୍ବଲପୁର ଜିଲ୍ଲାରୁ ଓଡ଼ିଆ ଭାଷାର ଉଚ୍ଛେଦ ଓ ହିନ୍ଦୀଭାଷା ପ୍ରଚଳନ ପାଇଁ ଜାରି ହୋଇଥିବା ନିର୍ଦ୍ଦେଶନାମା ବିରୁଦ୍ଧରେ ଧରଣୀଧର ମିଶ୍ର ଓ ସ୍ୱଭାବ କବି ଗଙ୍ଗାଧରଙ୍କର ଅଧିନାୟକତ୍ୱରେ ଯେଉଁ ସ୍ୱତଃସ୍ଫୂର୍ତ୍ତ ସଂଗ୍ରାମ ସଞ୍ଚାଳିତ ହୋଇଥିଲା, ତାହାର ପଟାନ୍ତର ନାହିଁ । ଓଡ଼ିଆ ଭାଷା ଉଚ୍ଛେଦ ପାଇଁ ମଧ୍ୟପ୍ରଦେଶ ସରକାରଙ୍କର ନିର୍ଦ୍ଦେଶନାମାରେ ଏପରି ଉଲ୍ଲେଖ ରହିଥିଲା । 'ସମ୍ବଲପୁରର ଓଡ଼ିଆଭାଷା, ଓଡ଼ିଶାରେ ପ୍ରଚଳିତ ଓଡ଼ିଆ ଭାଷା ନୁହେଁ । ଏହା ଏକ ସ୍ଥାନୀୟ ଭାଷା ଯହିଁରେ ବ୍ୟାପକ ଭାବେ ଛତିଶଗଡ଼ୀ ଓ ହିନ୍ଦୀଭାଷାର ମିଶ୍ରଣ ରହିଅଛି ।'

ଏହି ଯୁକ୍ତିର ପ୍ରତ୍ୟୁତ୍ତରରେ ଧରଣୀଧର ମିଶ୍ରଙ୍କର ନେତୃତ୍ୱରେ ୫.୭.୧୮୯୫ରେ ୨୩୬୪ ବ୍ୟକ୍ତିଙ୍କର ସ୍ୱାକ୍ଷର ସମ୍ବଳିତ ଯେଉଁ ମେମୋରେଣ୍ଡମ ଭାରତର ବଡ଼ଲାଟ୍ ଲର୍ଡ଼ ଏଲଗିନ୍‌ଙ୍କୁ ପ୍ରେରିତ ହୋଇଥିଲା, ସେଥିରେ ଏହିଭଳି ଉଲ୍ଲେଖ ରହିଥିଲା-

'ସମ୍ବଲପୁରର ଭାଷା ଓଡ଼ିଶାର ଓଡ଼ିଆ ନୁହେଁ, ଏକଥା ସତ୍ୟ ନୁହେଁ । ଓଡ଼ିଶାର ସ୍କୁଲ ଇନ୍ସପେକ୍ଟର କିମ୍ବା ଓଡ଼ିଆ ଉଚ୍ଚପଦସ୍ଥ ବିଦ୍ୱାନ ବ୍ୟକ୍ତିମାନଙ୍କର ନିକଟରେ ଜିଜ୍ଞାସା କଲେ ସରକାର ଏହାର ପ୍ରକୃତ ଭାବ ଜାଣିପାରିବେ । ଦୂରତ୍ୱ ଯୋଗୁଁ ପ୍ରତ୍ୟେକ ଭାଷାର ପ୍ରାଦେଶିକ ଭେଦ ଦେଖାଯାଏ । କଲିକତାର ବଙ୍ଗଳା ସାହିତ୍ୟ ଓ ନଦିଆର ବଙ୍ଗଳା ଭାଷାରେ ପ୍ରଭେଦ ଅଛି । ଢାକାର ବଙ୍ଗଭାଷାର ଅଧିକ





ପ୍ରଭେଦ ସୃଷ୍ଟି ହୁଏ । ଇଂଲଣ୍ଡର ୟର୍କସାୟାରରେ ପ୍ରଚଳିତ ଭାଷା ଲଣ୍ଡନରୁ ଭିନ୍ନ ହେଲେ ମଧ୍ୟ ତାହା ଇଂରାଜୀ ଅଟେ ।

ଗତ ଜୁଲାଇ ମାସରେ ଚିଫ୍ କମିଶନର ସାହେବ ବାହାଦୂର, ହିନ୍ଦୀ ପ୍ରଚଳିତ ହେବା ବିରୋଧରେ ଯେଉଁ ଦରଖାସ୍ତପ୍ରାପ୍ତ ହୋଇଥିଲେ ତାହା ଭାବୋଚ୍ଛ୍ୱାସ ପ୍ରଣୋଦିତ ବୋଲି ଅଗ୍ରାହ୍ୟ କରିଥିବା ଜାରି ଆବେଦନକାରୀମାନେ ଦୁଃଖିତ । ଆବେଦନକାରୀମାନେ ପ୍ରଦର୍ଶନ କରିବାକୁ ବାଧ୍ୟ ହେଉଛନ୍ତି ଯେ, ଓଡ଼ିଆ ଭାଷା ସୁପାଠ୍ୟ, ପ୍ରାଚୀନ ଓ ଆଧୁନିକ ସାହିତ୍ୟରେ ପରିପୂର୍ଣ୍ଣ । ଓଡ଼ିଆଭାଷାରେ ସେହି ସମସ୍ତ ଚିହ୍ନ ସମ୍ପୂର୍ଣ୍ଣ ରୂପେ ରହିଅଛି, ଯହିଁରୁ ଜଣାଯାଏ ଯେ ଏହି ଭାଷା ସ୍ୱାଧୀନ ଏବଂ କେବେ ବିନାଶପ୍ରାପ୍ତ ହେବନାହିଁ । ଶ୍ରୀଯୁକ୍ତ ବୀମ୍ସ ସାହେବଙ୍କର ଓଡ଼ିଆଭାଷା ବିଷୟକ ପ୍ରସିଦ୍ଧ ଗ୍ରନ୍ଥ ପାଠକଲେ ଏହା ଜଣାପଡ଼ିବ ।

ଶ୍ରୀଯୁକ୍ତ ଚାର୍ଲ୍ସଗ୍ରାଣ୍ଟ ସାହେବ ମଧ୍ୟପ୍ରଦେଶ ଗେଜେଟିଆରର ଭୂମିକାରେ ଲେଖିଅଛନ୍ତି ଯେ, ସମ୍ବଲପୁର ଓ ତାହାର ଗଡ଼ଜାତ ମାହାଲ ସହିତ ଛତିଶଗଡ଼ ଅନ୍ୟାଂଶର କୌଣସି ଭୌଗୋଳିକ ବା ଐତିହାସିକ ସମ୍ପର୍କ ନାହିଁ ।

ଆବେଦନକାରୀମାନେ ସ୍ପଷ୍ଟରୂପେ ପ୍ରଦର୍ଶନ କରୁଅଛନ୍ତି ଯେ, ଭାଷାଦି ଶିକ୍ଷାର ସୁବିଧା ନିମିତ୍ତ ହେଉ ଅଥବା ଐତିହାସିକ କାରଣରୁ ହେଉ, ସମ୍ବଲପୁରରେ ଓଡ଼ିଆଭାଷା ଅକ୍ଷୁଣ୍ଣ ରହିବା ଉଚିତ । କିନ୍ତୁ ଏହା ମଧ୍ୟ ପ୍ରଦର୍ଶନ ହୋଇଛି ଶାସନକାର୍ଯ୍ୟରେ ସେପରି କିଛି ବାଧା ଉପୁଜିବ ନାହିଁ । ତଥାପି କାର୍ଯ୍ୟ ସୁକରଣ ନିମନ୍ତେ ଯଦି ଭାଷା ପରିବର୍ତ୍ତନ ବାଞ୍ଛନୀୟ ହୁଏ, ତେବେ ସମ୍ବଲପୁର ଓ ତାହାର ଗଡ଼ଜାତ ମାହାଲମାନଙ୍କୁ ବଙ୍ଗ ଗଭର୍ଣ୍ଣମେଣ୍ଟଙ୍କର ହସ୍ତରେ ସମର୍ପଣ କରି ଦିଆଯାଉ, କାରଣ ଓଡ଼ିଆ ଲୋକଙ୍କର ସହିତ ଏହି ଲୋକମାନଙ୍କର ଭୌଗୋଳିକ, ଐତିହାସିକ ଓ ସାମାଜିକ ସମ୍ପର୍କ ଥିବାରୁ, ଏହି ପ୍ରକାର ପରିବର୍ତ୍ତନ ସମ୍ବଲପୁରବାସୀଙ୍କ ପକ୍ଷେ ମଙ୍ଗଳକର ହେବ । ସମ୍ବଲପୁର କଟକର ଦୂରତ୍ୱ ରାୟପୁର ଦୂରତ୍ୱରୁ ଅଧିକ ନୁହେଁ ।' ଏହି ବକ୍ତବ୍ୟ ମାଧ୍ୟମରେ ଦେଶ ବତ୍ସଳତାର ଯେଉଁ ଦୁର୍ବାର ଅଗ୍ନିଶିଖା ପ୍ରଜ୍ୱଳିତ ହୋଇଥିଲା, ତାହାର ତୁଳନା ନାହିଁ ।

ଓଡ଼ିଆ ଭାଷା ବିଲୁପ୍ତି ଆଦେଶ ପ୍ରଚାରିତ ହେବାପରେ କଟକରେ ଉତ୍କଳସଭାର ସଭାପତି ମଧୁସୂଦନ ଦାସ କ୍ରମାନ୍ୱୟରେ ଉତ୍କଳ ଦୀପିକାରେ 'ମଧ୍ୟପ୍ରଦେଶରୁ ଓଡ଼ିଆଭାଷାର ନିର୍ବାସନ' ଶୀର୍ଷକ ଇଂରାଜୀରେ ସାତଗୋଟି ଭାଷାତାତ୍ତ୍ୱିକ ପ୍ରବନ୍ଧ ଲେଖି ଏହାର ଶାଣିତ ଓ ତୀବ୍ର ପ୍ରତିବାଦ କରିଥିଲେ । ତାହା ସହିତ ୨୦.୬.୧୯୯୫ ରେ ସେ ଯେଉଁ ମେମୋରାଣ୍ଡମ ବଡ଼ଲାଟଙ୍କୁ ପ୍ରେରିତ କରିଥିଲେ ସେଥିରେ ଉଲ୍ଲେଖ କରିଥିଲେ ଯେ, 'ମାତୃଭାଷାର କଣ୍ଠରୋଧ କରିବା ଭଳି ବୀଭତ୍ସ ଅପରାଧ ବର୍ବରତମ ପ୍ରଶାସନରେ ମଧ୍ୟ ଦେଖାଯାଏ ନାହିଁ ।

ଏଣେ ୧୮୯୯ବେଳକୁ ସମ୍ବଲପୁର ଜିଲ୍ଲାରେ ୮୨ଗୋଟି ଓଡ଼ିଆ ପ୍ରାଥମିକ ସ୍କୁଲର ଉଚ୍ଛେଦ, ତୃତୀୟ ଶ୍ରେଣୀଠାରୁ ହିନ୍ଦୀ ଭାଷାର ବାଧ୍ୟତାମୂଳକ ପ୍ରଚଳନ ସହିତ ବିଭିନ୍ନ ଆଦେଶ, ସମନ, ଆଉ ଜମି ସମ୍ପର୍କୀୟ ଦସ୍ତାବିଜ ହିନ୍ଦୀଭାଷାରେ ଲିଖିତ ହେବାରୁ, ସମଗ୍ର ଜିଲ୍ଲାରେ ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୂପକାର, ମହନ୍ତ ବିହାରୀ ଦାସଙ୍କର ନେତୃତ୍ୱରେ

୨୭.୦୧.୧୯୦୧ରେ ଭାରତର ବଡ଼ଲାଟଙ୍କୁ ପ୍ରେରିତ ହୋଇଥିଲା ।

ପ୍ରାୟ ୧୮୯୯ସାଲରେ ଏଲଗିନ୍‌ଙ୍କ ସ୍ଥାନରେ ଲର୍ଡ଼ କର୍ଜନଙ୍କୁ ଭାରତର ବଡ଼ଲାଟ ରୂପରେ ଅଧିଷ୍ଠିତ କରାଯାଇଥିଲା । ମଧୁସୂଦନଙ୍କର ୧୮୯୭ରେ ଇଂଲଣ୍ଡ ପରିଦର୍ଶନ ପରେ ସେ କ୍ରମାନ୍ୱୟରେ ବଡ଼ଲାଟଙ୍କୁ ଭାଷା ସମସ୍ୟା ସମ୍ପର୍କୀୟ ଦାବିପତ୍ରମାନ ପ୍ରେରିତ କରୁଥିଲେ । ଏହିଭଳି ଏକ ଦାବିପତ୍ର ପ୍ରାପ୍ତହୋଇ ଲର୍ଡ଼ କର୍ଜନଙ୍କର ନିମନ୍ତ୍ରଣରେ ମଧୁସୂଦନ ବଡ଼ଲାଟଙ୍କୁ ସିମ୍‌ଲାଠାରେ ୧୯୦୦ସାଲ ଅକ୍ଟୋବର ତୃତୀୟ ସପ୍ତାହରେ ଭେଟି ଓଡ଼ିଆ ଜାତିର ଅନ୍ତର୍ଦାହ, ଭାଷାସମସ୍ୟା ଓ ବିଭାଜିତ ଓଡ଼ିଆ ଭାଷାଅଞ୍ଚଳର ମିଶ୍ରଣ ଲାଗି ଦାବି ଅତ୍ୟନ୍ତ ବିହ୍ୱଳିତ କଣ୍ଠରେ ଉପସ୍ଥାପିତ କରିଥିଲେ, ଯାହା ଲର୍ଡ଼ କର୍ଜନଙ୍କୁ ଅଭିଭୂତ କରିଥିଲା । ମଧୁସୂଦନଙ୍କର ସ୍ୱତନ୍ତ୍ର ନିମନ୍ତ୍ରଣରେ ୧୬.୧୨.୧୯୦୦ରେ ଲର୍ଡ଼କର୍ଜନ ପୁରୀ ଓ ଭୁବନେଶ୍ୱରର ଅପୂର୍ବ କଳା ଭାସ୍କର୍ଯ୍ୟ ସମ୍ବଳିତ ମନ୍ଦିରାବଳୀ ପରିଦର୍ଶନ ପରେ ସେ ବିଖଣ୍ଡିତ ଓଡ଼ିଆଭାଷୀ ଅଞ୍ଚଳର ସମାଧାନ ସୂତ୍ର ବାହାର କରିବା ପାଇଁ ପ୍ରତିଶ୍ରୁତିବଦ୍ଧ ହେଲେ ।

ଓଡ଼ିଶାରୁ ଫେରିବାର ଦୁଇମାସ ମଧ୍ୟରେ ଭାରତର ବଡ଼ଲାଟ ଲର୍ଡ଼ କର୍ଜନ ମଦନମୋହନ ମିଶ୍ର ଆଦିଙ୍କର ପ୍ରେରିତ ମେମୋରେଣ୍ଡମ ସମ୍ବଲପୁରରୁ ପ୍ରାପ୍ତହୋଇ ଏହି ସମ୍ପର୍କରେ ବିଧିବଦ୍ଧ ଅନୁସନ୍ଧାନ କରିବା ପାଇଁ ଏକ ଆଦେଶ ଦେଇଥିଲେ ।

ଏଣେ ୧୯୦୧ସାଲର ସେପ୍ଟେମ୍ବର ମାସରେ ସିମ୍‌ଲାଠାରେ ଶିକ୍ଷା ସମ୍ମିଳନୀ ଅନୁଷ୍ଠିତ ହେବାର ପରିପ୍ରେକ୍ଷୀରେ, ମଧ୍ୟପ୍ରଦେଶ ଚିଫ୍ କମିଶନର ସାର୍ ଏଣ୍ଡ୍ରୁ ଫ୍ରେଜରଙ୍କ ସହିତ ବଡ଼ଲାଟଙ୍କର ସାକ୍ଷାତକାର ହେବାର ସମ୍ଭାବନା ଦୃଷ୍ଟିରୁ ମଧୁସୂଦନ ୧୯୦୧ସାଲ୍‌ରେ ଅଗଷ୍ଟ ଶେଷ ସପ୍ତାହରେ ଭାଷା ସଂକ୍ରାନ୍ତୀୟ ସମସ୍ତ କାଗଜପତ୍ର ଚିଠି ଓ ଟେଲିଗ୍ରାମ ଜରିଆରେ ବଡ଼ଲାଟ୍‌ଙ୍କର ପ୍ରାଇଭେଟ ସେକ୍ରେଟାରୀ ଓ ମଧୁସୂଦନଙ୍କର ଅନ୍ତରଙ୍ଗ ବନ୍ଧୁ ୱାଲ୍ଟର ଲରେନ୍ସଙ୍କୁ ପ୍ରେରିତ କରି ବଡ଼ଲାଟ ଓ ମଧ୍ୟପ୍ରଦେଶର ଚିଫ୍ କମିଶନରଙ୍କ ମଧ୍ୟରେ ଏକ ଆଲୋଚନା ସଞ୍ଚାଳିତ କରିବା ପାଇଁ ସବିଶେଷ ଅନୁରୋଧ କରିଥିଲେ । ବଡ଼ଲାଟ୍‌ଙ୍କର ପ୍ରାଇଭେଟ ସେକ୍ରେଟାରୀ ୱାଲଟର ଲରେନ୍ସ ୧୨.୦୯.୧୯୦୧ରେ ଜଣାଇଲେ ଯେ, 'ମୁଁ ଆପଣଙ୍କ ପାଖରୁ ଆସିଥିବା ସମସ୍ତ ପତ୍ର ଓ ଟେଲିଗ୍ରାମ ବଡ଼ଲାଟଙ୍କ ପାଖରେ ଉପସ୍ଥାପିତ କରିଥିଲି । ଆଲୋଚନା ସଞ୍ଚାଳିତ ହେବା ପରେ ମଧ୍ୟପ୍ରଦେଶର ଚିଫ୍ କମିଶନର ସମ୍ବଲପୁରରୁ ପ୍ରାପ୍ତ ଏକ ଦରଖାସ୍ତ ଉପରେ ଅନୁସନ୍ଧାନ କାର୍ଯ୍ୟ ଶୀଘ୍ର ସମାପ୍ତ କରିବା ପାଇଁ ଧାର୍ଯ୍ୟ ହେଲା ।' ବଡ଼ଲାଟଙ୍କର ଏହି ଆଦେଶ ପ୍ରାପ୍ତ ହୋଇ ମଧ୍ୟପ୍ରଦେଶର କମିଶନର ସାର୍ ଏଣ୍ଡ୍ରୁ ଫ୍ରେଜର ୨୬.୦୯.୧୯୦୧ରେ ସମ୍ବଲପୁରରେ ଅନୁସନ୍ଧାନ କାର୍ଯ୍ୟ ଆରମ୍ଭ କରିବେ ବୋଲି ସ୍ଥିର କରିଥିଲେ ।

ଏଣେ ବ୍ରଜମୋହନ ପଟ୍ଟନାୟକଙ୍କର ନେତୃତ୍ୱରେ ସମ୍ବଲପୁରର ନେତୃତ୍ୱମଣ୍ଡଳୀ ସେହିବର୍ଷ ଜୁଲାଇ ଶେଷସପ୍ତାହରେ ଶ୍ରୀମତୀ ମିଶ୍ରଙ୍କ ସହ ବଡ଼ଲାଟଙ୍କୁ ଭେଟିବାପାଇଁ ଯାତ୍ରା ଆରମ୍ଭ କରି ସିମ୍‌ଲାଠାରେ ସେପ୍ଟେମ୍ବର ମାସର ମଧ୍ୟଭାଗରେ ପହଞ୍ଚିଥିଲେ । ମାତ୍ର ଏଣ୍ଡ୍ରୁ ଫ୍ରେଜରଙ୍କର ଗସ୍ତକାର୍ଯ୍ୟକ୍ରମ ସମ୍ପର୍କରେ ଅବଗତ ହେବା ପରେ ସେମାନେ ସମ୍ବଲପୁର ଫେରିଆସିଥିଲେ ।

ସାର୍ ଏଣ୍ଡ୍ରୁ ଫ୍ରେଜର ୧୯୦୧ସାଲର ସେପ୍ଟେମ୍ବର ୨୬ରୁ ୩୦ତାରିଖ ମଧ୍ୟରେ ସମ୍ବଲପୁରରେ



ଅନୁଧ୍ୟାନ କରି ୫.୦୭.୧୯୦୧ରେ ତାହାଙ୍କର ଯେଉଁ ରିପୋର୍ଟ ପ୍ରେରିତ କରିଥିଲେ ତାହାଠି ଆଧାରରେ ଲର୍ଡ଼ କର୍ଜନ୍ ୦୧.୦୧.୧୯୦୩ରୁ ସମ୍ବଲପୁରରେ ଓଡ଼ିଆ ଭାଷା ପୁନଃ ସଞ୍ଚାଳିତ କରିଥିଲେ ।

ଏହି ଭାଷା ସଂଗ୍ରାମୀ ପଞ୍ଚସଖାଙ୍କ ସହ ସମ୍ବଲପୁରର ଆସିଷ୍ଟାଣ୍ଟ କମିଶନର ବୈକୁଣ୍ଠନାଥ ପୂଜାରୀ, ୧୯୦୧ ସାଲରେ ଓଡ଼ିଆଭାଷୀ ଜନସଂଖ୍ୟା ସୁରକ୍ଷିତ ରଖିବା ପାଇଁ ଅହୋରାତ୍ର ଅଶ୍ୱପୃଷ୍ଠରେ ଭ୍ରମଣ କରି ନିଜର ଜୀବନକୁ ଉତ୍ସର୍ଗ କରିଥିଲେ । ସ୍ୱାଧୀନତା ସଂଗ୍ରାମୀ ଚନ୍ଦ୍ରଶେଖର ବେହେରା ମଧ୍ୟ ଏହି ଭାଷା ସଂଗ୍ରାମକୁ ମାର୍ଗଦର୍ଶନ ପ୍ରଦାନ କରିଥିଲେ । ସେମାନଙ୍କର ଅବଦାନ ଅବିସ୍ମରଣୀୟ ।

ସମଗ୍ର ଭାରତରେ ପ୍ରାଦେଶିକ ସୀମା ପରିବର୍ତ୍ତନ ପାଇଁ ବଡ଼ଲାଟ ଯେଉଁ ପରିକଳ୍ପନାର ସଂଯୋଜନା କରିଥିଲେ, ତାହାକୁ ୧୯୦୩ରେ ପ୍ରକାଶିତ ସରକୁଲାର୍ ମାଧ୍ୟମରେ ପ୍ରଚାରିତ କରିଥିଲେ । ଏହି ସଂଯୋଜନା ମଧ୍ୟରେ ବଙ୍ଗର ବିଭାଜନ, ବେରାର୍‌ର ମଧ୍ୟପ୍ରଦେଶ ସହିତ ମିଶ୍ରଣ, ଛୋଟ ନାଗପୁର ଡିଭିଜନ୍‌ରୁ କିଛି ଗଡ଼ଜାତର ମଧ୍ୟପ୍ରଦେଶର ମିଶ୍ରଣ ସହିତ ସମଗ୍ର ଓଡ଼ିଆଭାଷୀ ଅଞ୍ଚଳର ବଙ୍ଗପ୍ରଦେଶ ସହିତ ମିଶ୍ରଣର ପରିକଳ୍ପନା ସ୍ଥାନ ପାଇଥିଲା । ମାତ୍ର ପତ୍ନୀଙ୍କର ଅସୁସ୍ଥତା ଯୋଗୁଁ ୧୯୦୪ସାଲର ଏପ୍ରିଲ ମାସରେ ଲର୍ଡ଼ କର୍ଜନ ଦୀର୍ଘ ଛୁଟିନେଇ ଚାଲିଯିବାରୁ, ଅସ୍ଥାୟୀଭାବେ ବଡ଼ଲାଟ ଦାୟିତ୍ୱରେ ଥିବା ମାନ୍ଦ୍ରାଜ ଗଭର୍ଣ୍ଣର ଲର୍ଡ଼ ଏମ୍‌ଥିଲ୍ ଦକ୍ଷିଣ ଓଡ଼ିଶାର ବଙ୍ଗ ସହିତ ମିଶ୍ରଣର ସିଦ୍ଧାନ୍ତ ବିରୁଦ୍ଧରେ ଏକ ପୂର୍ଣ୍ଣଚ୍ଛେଦ ଟାଣି ଦେଇଥିଲେ । ଲର୍ଡ଼ କର୍ଜନ ୧୯୦୫ସାଲର ପୂର୍ବଭାଗରେ ପୁଣି ବଡ଼ଲାଟ୍ ପଦରେ ଯୋଗ ଦେବାପରେ ୧୬.୧୦.୧୯୦୫ରେ ରିସଲେ ସରକୁଲାର୍‌କୁ କାର୍ଯ୍ୟକାରୀ କରିଥିଲେ । ଏହି ପରିପ୍ରେକ୍ଷୀରେ ୧୬.୧୦.୧୯୦୫ସାଲରେ ସମ୍ବଲପୁରଠାରେ ବଙ୍ଗର ଗଭର୍ଣ୍ଣର ସାର୍ ଏଣ୍ଡ୍ରୁ ଫ୍ରେଜରଙ୍କ ଦ୍ୱାରା ଏକଭବ୍ୟ ଦରବାରର ଆୟୋଜନ କରାଯାଇଥିଲା ଯହିଁରେ, ମଧ୍ୟପ୍ରଦେଶର ଛତିଶଗଡ଼ ଡିଭିଜନରୁ ସମ୍ବଲପୁର ଜିଲ୍ଲା କଳାହାଣ୍ଡି, ପାଟନା, ସୋନପୁର, ରେଢ଼ାଖୋଲ ଓ ବାମଣ୍ଡା ଗଡ଼ଜାତମାନ ଓ ଛୋଟନାଗପୁର୍ ଡିଭିଜନରୁ ଗାଙ୍ଗପୁର ଓ ବଣେଇ ଗଡ଼ଜାତମାନ ଆସି ଓଡ଼ିଶା ଡିଭିଜନରେ ମିଶିବା ପରିପ୍ରେକ୍ଷୀରେ, ଏହି ସାତଗୋଟି ଗଡ଼ଜାତମାନଙ୍କର ରାଜାମାନଙ୍କୁ ସ୍ୱତନ୍ତ୍ର ସନନ୍ଦମାନ ପ୍ରଦାନ କରାଯାଇଥିଲା ।

ସୁଦୀର୍ଘ ଚାରିଦିନ ବ୍ୟାପୀ ନବ ମିଶ୍ରଣର ଉଲ୍ଲାସଭରା, ଆହ୍ଲାଦମୟ ଉତ୍ସବରେ ଉତ୍କଳ ସମ୍ମିଳନୀ ପକ୍ଷରୁ ମଧୁସୂଦନ ଦାସଙ୍କ ଦ୍ୱାରା ପ୍ରେରିତ ଦାମୋଦର କର, ଚନ୍ଦ୍ରଶେଖର ନନ୍ଦ, ବ୍ରହ୍ମାନନ୍ଦ ଷଡ଼ଙ୍ଗୀ ପ୍ରଭୃତି କବି ଗୋଷ୍ଠୀ ଯୋଗଦାନ କରି ଏକ ନିବିଡ଼ ଆନ୍ତରିକତାର ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି କରିଥିଲେ ।

ଏହି ୧୬.୧୦.୧୯୦୫ରେ ଅନୁଷ୍ଠିତ ତାତ୍ପର୍ଯ୍ୟପୂର୍ଣ୍ଣ ମିଶ୍ରଣର ଠିକ୍ ଏକମାସ ପରେ ୧୮.୧୧.୧୯୦୫ରେ ଏହି ମିଶ୍ରଣର ସର୍ବମୟକର୍ତ୍ତା ଲର୍ଡ଼ କର୍ଜନଙ୍କୁ ଦେଖିବାକୁ ମିଳିଥିଲା, ବମ୍ବେର ବନ୍ଦରରେ ଅସ୍ତମିତ ସୂର୍ଯ୍ୟର ଦୀପ୍ତିମନ୍ତ ଆଲୋକରେ ଏକ ଲଣ୍ଡନଗାମୀ ଜାହାଜରେ ଆରୋହଣ କରିବା ସମୟରେ ଠିକ୍ ସୂର୍ଯ୍ୟାସ୍ତର ବେଳାରେ । ଖଣ୍ଡେ ଦୂରରେ ବିଦାୟ ସମ୍ବର୍ଦ୍ଧନା ଜଣାଉଥାନ୍ତି ନବନିଯୁକ୍ତ ବଡ଼ଲାଟ ଲର୍ଡ଼ ମିଣ୍ଟୋ । ସୂର୍ଯ୍ୟାସ୍ତର ସେହି ବିଭାମଣ୍ଡିତ ବର୍ଣ୍ଣିଳ ଆଲୋକରେ ଲର୍ଡ଼

କର୍ଜନ ଆଜି ଅସ୍ତମିତ । ମାତ୍ର ସେ ସଦା ଭାସ୍ୱର ରହିଛନ୍ତି ଅମଳିନ ଦ୍ୟୁତିରେ ଓଡ଼ିଆର ଅନ୍ତରରେ, ନବ ଓଡ଼ିଶାର ଅନ୍ୟତମ ସ୍ରଷ୍ଟାରୂପରେ ।

ଏହି ପଶ୍ଚିମ ଭୂଖଣ୍ଡର ୧୬. ୧୦. ୧୯୦୫ରେ ଗୌରବାବହ ମିଶ୍ରଣ, ପ୍ରକୃତରେ ଓଡ଼ିଶାକୁ ଏକ ସବ୍‌ପ୍ରଭିନ୍ସ(କ୍ଷୁଦ୍ର ପ୍ରଦେଶ)ସ୍ତରକୁ ଉନ୍ନୀତ କରିଥିଲା, ଯାହାର ଅନ୍ତିମ ପରିଣତିରେ ୧୯୩୬ ସାଲ୍‌ରେ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠିତ ହୋଇଥିଲା । ତେଣୁ ଏହି ଅବିସ୍ମରଣୀୟ ତାତ୍ପର୍ଯ୍ୟପୂର୍ଣ୍ଣ ୧୬.୧୦.୧୯୦୫ ତାରିଖଟି ହେଉଛି ନବ ଓଡ଼ିଶାର ଆଦ୍ୟ ଜନ୍ମୋତ୍ସବ ।

('ସମଦୃଷ୍ଟି'-୧୬-୩୧ ଅଗଷ୍ଟ-୨୦୦୭)











# ଗାନ୍ଧିଜୀ, ଆମ୍ବେଦକର ଆଉ ମଧୁସୂଦନ

ସ୍ୱାଧୀନତାର ଅଗ୍ରଦୂତ ମହାତ୍ମାଗାନ୍ଧୀଙ୍କର ଜାତୀୟବାଦୀ କାର୍ଯ୍ୟଧାରାର ପଟ୍ଟଭୂମିରେ ପରାଧୀନ ଭାରତରେ ଆମ୍ବେଦକର ଏବଂ ମଧୁସୂଦନ, ଗାନ୍ଧିଜୀଙ୍କ ପ୍ରତି ଉଚ୍ଛ୍ୱସିତ ସମର୍ଥନ ଜଣାଇଥିଲେ ମଧ୍ୟ ନିଜର ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ, କଲ୍ୟାଣପ୍ରଦ ତଥା ମହତ୍ତର ଲକ୍ଷ୍ୟ ତୁରନ୍ତ ହାସଲ କରିବାର ଆତୁରତା ପାଇଁ ସେମାନଙ୍କୁ ଗାନ୍ଧିଜୀଙ୍କର କିଞ୍ଚିତ୍ ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏହାଛଡ଼ା ସେଇ ସମୟର ତୁଙ୍ଗ ନେତୃବର୍ଗଙ୍କ ସହିତ ସେମାନଙ୍କୁ ରୀତିମତ ସଂଘର୍ଷ କରିବାକୁ ପଡ଼ିଥିଲା । ଆମ୍ବେଦକର ଆଉ ମଧୁସୂଦନଙ୍କ କାର୍ଯ୍ୟଧାରାକୁ ବିଶ୍ଳେଷଣ କଲେ, ସେମାନଙ୍କ ମଧ୍ୟରେ କିଛି ସମାନତା ବାରି ହୁଏ ।

ଭାରତରତ୍ନ ଭୀମରାଓ ଆମ୍ବେଦକର (୧୮୯୧-୧୯୫୬) ନିର୍ଯ୍ୟାତିତ ଆଉ ନିଷ୍ପେସିତ ଦଳିତ ଜାତିର ମୁକ୍ତି ଓ ଆର୍ଥିକ ବିକାଶପାଇଁ ଏବଂ ଜାତୀୟ ଗୌରବ ମଧୁସୂଦନ ଦାସ (୧୮୪୮-୧୯୩୪) ବିଖଣ୍ଡିତ ଓ ବିଭାଜିତ କଙ୍କାଳସାର ଓଡ଼ିଆ ଜାତିର ନିଜସ୍ୱ ଭାଷାଭିତ୍ତିକ (ଓଡ଼ିଶା)ପ୍ରଦେଶର ସ୍ଥାପନ ପାଇଁ ଜୀବନବ୍ୟାପୀ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ । ଏହି ଲକ୍ଷ୍ୟପ୍ରାପ୍ତି ପାଇଁ ସେମାନେ ମହାତ୍ମାଗାନ୍ଧୀଙ୍କର ଅକୁଣ୍ଠିତ ସମର୍ଥନ ମଧ୍ୟ ହାସଲ କରିଥିଲେ । ଆମ୍ବେଦକର ଆଉ ମଧୁସୂଦନଙ୍କ ପାଇଁ ସ୍ୱାଧୀନତା ପ୍ରାପ୍ତିର ଯଥେଷ୍ଟ ପୂର୍ବରୁ ସେମାନଙ୍କ ଲକ୍ଷ୍ୟପୂରଣ ହେବା ଆବଶ୍ୟକ ଥିଲା, କାରଣ ସ୍ୱାଧୀନତା ପରେ ସେହି ଲକ୍ଷ୍ୟହାସଲ କରିବା ଅତ୍ୟନ୍ତ ଦୁରୂହ ଓ କଷ୍ଟସାଧ୍ୟ ବ୍ୟାପାର ହୋଇପଡ଼ିଥାନ୍ତା ।

ଦଳିତ ଜାତିମାନଙ୍କ ସମସ୍ୟାର ଆଶୁ ସମାଧାନ କ୍ଷେତ୍ରରେ ଆମ୍ବେଦକରଙ୍କର ବକ୍ତବ୍ୟ ଥିଲା, 'ମୁଁ ଅତ୍ୟନ୍ତ ଆତଙ୍କିତ ଯେ ଭାରତ, ବର୍ତ୍ତମାନସ୍ଥିତିରେ ଯଦି ସ୍ୱାଧୀନତା ଲାଭକରେ, ତାହାହେଲେ ଉଚ୍ଚବର୍ଗର ହିନ୍ଦୁମାନଙ୍କ ଦ୍ୱାରା ଅସ୍ପୃଶ୍ୟମାନେ ଅଧିକ ନିର୍ଯ୍ୟାତିତ ଓ ନିପୀଡ଼ିତ ହେବେ ।' ଏହି କଥାକୁ ତାତ୍ତ୍ୱିକ ସମର୍ଥନ ଜଣାଇ ମହାତ୍ମା ଗାନ୍ଧୀ ୧୯୩୨ସାଲର ମଧ୍ୟଭାଗରେ କହିଥିଲେ 'ଅସ୍ପୃଶ୍ୟତାକୁ ହ୍ରାସ ନକରି ଯଦି ଆମେ କ୍ଷମତାକୁ ଆସୁ, ତେବେ ମୁଁ ନିଶ୍ଚିତ ଯେ ଅସ୍ପୃଶ୍ୟମାନଙ୍କ ପରିସ୍ଥିତି

ସ୍ୱାଧୀନତାପ୍ରାପ୍ତି ପରେ ଅଧିକ ଦୟନୀୟ ହେବ । କାରଣ ସ୍ୱାଧୀନତାପ୍ରାପ୍ତି [illegible] ଆଉ [illegible]
କୁସଂସ୍କାରଜନିତ ମତାନ୍ଧତା ଅଧିକ ବ୍ୟାପକ ଓ ଗଭୀର ହେବ ।'

ସେହିପରି ମଧୁସୂଦନ ଦାସ ଚାରିଟି ପ୍ରଦେଶରେ ବିଭାଜିତ ଓଡ଼ିଆ ଜାତି ସଂଖ୍ୟାଲଘୁ ଭାବେ ନିର୍ଯାତନାର ଶିକାରହେବା ସମ୍ପର୍କରେ ୧୯୨୦ ସାଲରେ ଗାନ୍ଧିଜୀଙ୍କୁ (ବ୍ରଜସୁନ୍ଦର ଦାସଙ୍କ ଜରିଆରେ) ଯେଉଁ ଚିଠି ଲେଖିଥିଲେ, ତାହାର କିଛି ଅଂଶ ଏହିପରି ଥିଲା ।

'ହେ ମହାତ୍ମାଗାନ୍ଧୀ ! ଆପଣଙ୍କର ନବନିର୍ମିତ ଭାରତ କ'ଣ ଓଡ଼ିଆ ଜାତିର ଭସ୍ମାବଶେଷ ଉପରେ ପ୍ରତିଷ୍ଠିତ ହେବ ?' ଏହି ଚିଠିଟିକୁ ମହାତ୍ମାଗାନ୍ଧୀ 'ଉତ୍କଳର ଚିତ୍କାର'ନାମରେ ୧୮.୨.୧୯୨୦'ୟଙ୍ଗ୍ ଇଣ୍ଡିଆ'ପତ୍ରିକାରେ ପ୍ରକାଶିତ କରିଥିଲେ ଏବଂ ସେହିବର୍ଷ ଡିସେମ୍ବର ମାସରେ ନାଗପୁରର ଜାତୀୟ କଂଗ୍ରେସ ଅଧିବେଶନରେ ଭାଷାଭିତ୍ତିକ ପ୍ରଦେଶ ଗଠନପାଇଁ ନୀତି ଗ୍ରହଣ କରିଥିଲେ । ସେହିପରି ୩୦.୩.୧୯୨୧ରେ ବ୍ରହ୍ମପୁରଠାରେ ଏକ ସଭାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନକୁ ସମ୍ଭବପର କରିବା ସକାଶେ ମାର୍ଗପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ମହାତ୍ମାଗାନ୍ଧୀ ଅଧିକ ବଳଶାଳୀ ଆନ୍ଧ୍ରବାସୀମାନଙ୍କୁ ଦୁର୍ବଳ ଓଡ଼ିଆମାନଙ୍କର ଦାବି ମାନିନେବା ପାଇଁ ଆହ୍ୱାନ ଜଣାଇଥିଲେ ।

ମଧୁସୂଦନ ଦାସ ସ୍ୱାଧୀନତାପ୍ରାପ୍ତି ପୂର୍ବରୁ ଓଡ଼ିଶା ପ୍ରଦେଶ ଗଠନପାଇଁ ଅଗ୍ରାଧିକାର ଭିତ୍ତିରେ ଦାବି କରିଥିଲେ । କାରଣ ତାଙ୍କ ଦୂରଦୃଷ୍ଟି ବଳରେ ସେ ଜାଣିପାରିଥିଲେ ଯେ, ସ୍ୱାଧୀନତାପ୍ରାପ୍ତି ପରେ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଦାବି ଅବହେଳିତ ହେଇଯିବାର ଆଶଙ୍କା ରହିଛି । ସ୍ୱାଧୀନତ୍ତୋର ଭାରତରେ ଓଡ଼ିଶାପ୍ରତି କେନ୍ଦ୍ରର ଅବହେଳା ସତ୍ୟ ପ୍ରମାଣିତ ହୋଇଥିଲା । ଏଣୁ ୧୧.୧୨.୧୯୧୭ରେ କଲିକତା ଯାଇ ମଣ୍ଟେଗୁ -ଚେମସ୍‌ଫୋର୍ଡ଼ କମିଟି ଆଗରେ ମଧୁସୂଦନ ତାହାଙ୍କର ବଳିଷ୍ଠ ଓଡ଼ିଶା ଗଠନ ଦାବି ଉପସ୍ଥାପନ କରିଥିଲେ । ସେହିପରି ଭାବେ ଆମ୍ବେଦକର ୧୯୧୮ ସାଲରେ ସାଉଥବରୋ ଓ ଅନ୍ୟାନ୍ୟ କମିଟି ସମ୍ମୁଖରେ ଦଳିତ ଜାତିର ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଅଧିକାର ପ୍ରାପ୍ତିପାଇଁ ବିଭିନ୍ନ ପ୍ରସ୍ତାବମାନ ଦୃଢ଼ ଭାବେ ଆଗତ କରିଥିଲେ । ଭାରତୀୟ ପ୍ରଶାସନରେ ପର୍ଯ୍ୟାପ୍ତ ସଂସ୍କାର ଆଣିବାପାଇଁ ୧୯୨୭ ସାଲରେ ଜନ୍ ସାଇମନ୍‌ଙ୍କର ଅଧକ୍ଷତାରେ ବ୍ରିଟିଶ ସରକାର ଏକ କମିଶନ ଗଠନ କରିଥିଲେ । ମାତ୍ର ସେଥିରେ କୌଣସି ଭାରତୀୟ ସଦସ୍ୟ ନଥିବାରୁ ଭାରତୀୟ ଜାତୀୟ କଂଗ୍ରେସ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲେ । ମାତ୍ର ଅନ୍ୟ ବହୁ ସଂଖ୍ୟାଲଘୁ ଦଳ, ଆମ୍ବେଦକରଙ୍କର ଅଧକ୍ଷତାରେ ଦଳିତ ସମାଜ ଓ ମଧୁସୂଦନଙ୍କର ନେତୃତ୍ୱରେ ଓଡ଼ିଶାର ରାଜନୈତିକ ଦଳ ଏହାର ସ୍ୱାଗତ କରିଥିଲେ । ମଧୁସୂଦନଙ୍କର ପରାମର୍ଶକ୍ରମେ ଓଡ଼ିଆମାନେ ସାଇମନ କମିଶନକୁ ୧୨.୧୨.୧୯୨୮ରେ ପାଟଣା ରେଳବାଇ ଷ୍ଟେସନଠାରେ ଭବ୍ୟ ସମ୍ବର୍ଦ୍ଧନା ଜଣାଇଥିଲେ ଆଉ ୧୪.୧୨.୧୯୨୮ରେ ପାଟନା ସଚିବାଳୟରେ ଏହି କମିଶନ ନିକଟରେ ଦାବିପତ୍ର ଦାଖଲ କରିଥିଲେ । ଅଟଲି କମିଟିର ସୁପାରିଶକ୍ରମେ ୭.୬.୧୯୩୦ରେ ପ୍ରକାଶିତ ସାଇମନ କମିଶନଙ୍କ ରିପୋର୍ଟରେ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ସ୍ଥାପନ ପାଇଁ ଅନୁମୋଦନ କରାଯାଇ-ଥିଲା । ପୂର୍ବରୁ ୧୮୯୭ ଏବଂ ୧୯୦୭ରେ ମଧୁସୂଦନ ଲଣ୍ଡନ ଯାଇ ଏଥିପାଇଁ ଭିତ୍ତିଭୂମି ନିର୍ମାଣ କରିଥିଲେ । ପରେ





ଅବଶ୍ୟ ସ୍ୱାସ୍ଥ୍ୟଗତ କାରଣରୁ ମଧୁସୂଦନ ଲଣ୍ଡନ ଯାଇନପାରିବାରୁ ତାଙ୍କ ଦ୍ୱାରା ପ୍ରେରିତ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ପ୍ରଥମ ଗୋଲଟେବୁଲ ବୈଠକରେ ୧୬.୧.୧୯୩୧ରେ ଓଡ଼ିଶାପକ୍ଷରୁ ବଳିଷ୍ଠ ଦାବି ଉପସ୍ଥାପନ କରିଥିଲେ । ପରେ ୭.୧୨.୧୯୩୨ରେ ତୃତୀୟ ଗୋଲଟେବୁଲ ବୈଠକରେ ଖଲ୍ଲିକୋଟର ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଓ ଭୁବନାନନ୍ଦ ଦାସଙ୍କର ଦାବି ଉପସ୍ଥାପିତ ପରେ ୨୪.୧୨.୧୯୩୨ରେ ଓଡ଼ିଶା ପ୍ରଦେଶ ସ୍ଥାପନାର ସିଦ୍ଧାନ୍ତ ଉଦ୍‌ଘୋଷିତ ହେଲା । ଏଥିପାଇଁ ଅବଶ୍ୟ ମହାତ୍ମାଗାନ୍ଧୀଙ୍କ ପକ୍ଷରୁ ପରୋକ୍ଷ ସମର୍ଥନ ମିଳିଥିଲା । ତଥାପି ଜାତୀୟତାବାଦୀ ନେତୃବର୍ଗ ଏହାର ତୀବ୍ରବିରୋଧ କରିଥିଲେ । କିନ୍ତୁ ପରିଶେଷରେ ଏହି ପ୍ରୟାସର ଅନ୍ତିମ ପରିଣତିସ୍ୱରୂପ ଭାରତର ପ୍ରଥମ ଭାଷାଭିତ୍ତିକ ରାଜ୍ୟ ରୂପେ ୧.୪.୧୯୩୬ରେ ଓଡ଼ିଶା ପ୍ରଦେଶ ଗଠିତ ହେଲା । ଆଉ ମଧୁସୂଦନ ଦାସ ସମଗ୍ର ଭାରତରେ ଭାଷାଭିତ୍ତିକ ରାଜ୍ୟ ସ୍ଥାପନାର ଆଦ୍ୟ ପ୍ରବର୍ତ୍ତକରୂପେ ସ୍ୱୀକୃତ ହେଲେ ।

ଦଳିତମାନଙ୍କ ସାମଗ୍ରିକ ଉନ୍ନତି କଳ୍ପେ ଆମ୍ବେଦକରଙ୍କୁ ମଧୁସୂଦନଙ୍କର ପ୍ରଦର୍ଶିତ ସାମ୍ବିଧାନିକ ମାର୍ଗକୁ ଗ୍ରହଣ କରିବାକୁ ପଡ଼ିଥିଲା । ସାଇମନ କମିଶନ ୩.୨.୧୯୨୮ରେ ବମ୍ବେରେ ପହଞ୍ଚିବା ପରେ ବମ୍ବେ ବିଧାନ କାଉନସିଲର ସଦସ୍ୟରୂପେ ତଥା ଦଳିତଜାତିର ଅଧକ୍ଷ ରୂପେ ଆମ୍ବେଦକର ପୁନାଠାରେ ଅକ୍ଟୋବର ୧୯୨୮ରେ ସାଇମନ କମିଶନଙ୍କ ସମ୍ମୁଖରେ ସାକ୍ଷ୍ୟ ପ୍ରଦାନ କରିବା ପରେ ୩.୫.୧୯୨୯ରେ ବମ୍ବେଠାରେ ସୁବିସ୍ତାରିତ ପ୍ରସ୍ତାବମାନ ସାଇମନ କମିଶନଙ୍କ ନିକଟରେ ଦାଖଲ କରିଥିଲେ । ଏହି ପ୍ରସ୍ତାବ ସବୁର ଆଲୋଚନା ପାଇଁ ଲଣ୍ଡନଠାରେ, ୧୯୩୦ରୁ ୧୯୩୨ ପର୍ଯ୍ୟନ୍ତ ତିନିଗୋଟି ଗୋଲଟେବୁଲ ବୈଠକ ବସିଥିଲା । ଆମ୍ବେଦକର ୧୨. ୧୧. ୧୯୩୦ରେ ପ୍ରଥମ ଗୋଲ୍‌ଟେବୁଲ ବୈଠକ ଆଉ ୧୫.୯. ୧୯୩୧ରେ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗଦେଇ ଦଳିତ ଜାତିର ଉନ୍ନୟନ ପାଇଁ ବିଭିନ୍ନ ପ୍ରସ୍ତାବ ସହିତ, ଦଳିତମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ଗଠନପାଇଁ ଦାବି ପତ୍ର ଉପସ୍ଥାପନ କରିଥିଲେ । ମାତ୍ର ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗ ଦେଇଥିବା ମହାତ୍ମାଗାନ୍ଧୀ ଦଳିତମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଗଠନର ପ୍ରସ୍ତାବକୁ ତୀବ୍ର ବିରୋଧ କରିଥିଲେ । ଭାରତକୁ ଫେରିବା ପରେ ମହାତ୍ମାଗାନ୍ଧୀ ପୁନା ନିକଟସ୍ଥ ୟେରୱାଡ଼ା ଜେଲ୍‌ରେ ବନ୍ଦୀ ହୋଇଥିବା ସମୟରେ ବ୍ରିଟିଶ ସରକାର ୧୭.୮.୧୯୩୨ରେ ଦଳିତମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଗଠନ ପ୍ରସ୍ତାବକୁ ସ୍ୱୀକୃତି ଦେଲେ । କିନ୍ତୁ ଏହା ଦ୍ୱାରା ଭାରତରେ ହିନ୍ଦୁସମାଜ ସବର୍ଣ୍ଣ ଆଉ ଦଳିତମାନଙ୍କ ମଧ୍ୟରେ ବିଭାଜିତ ହେବାର ଅଶଙ୍କା ଥିବାରୁ ୨୦.୯.୧୯୩୨ରେ ୟେରୱାଡ଼ା ଜେଲ୍‌ର ବଗିଚାର ଏକ ବଡ଼ ଆମ୍ବଗଛର ଛାଇରେ ମହାତ୍ମା ଗାନ୍ଧୀ ତାହାଙ୍କର ଆମରଣ ଅନଶନ ଆରମ୍ଭ କରିଥିଲେ ଯାହା ଯୁଗାନ୍ତକାରୀ ଅନଶନର ମାନ୍ୟତା ପାଇଥିଲା । ଏ କ୍ଷେତ୍ରରେ ମହାତ୍ମାଗାନ୍ଧୀଙ୍କ ଆମ୍ବେଦକରଙ୍କ ସହିତ କିଛି ବୁଝାମଣା ହେବା ପରେ ୨୬.୯.୧୯୩୨ରେ ମହାତ୍ମାଗାନ୍ଧୀ ଅନଶନ ଭଙ୍ଗ କରିଥିଲେ । ଏହିଭଳି ବିଭିନ୍ନ ସଂଗ୍ରାମରେ ଅବତୀର୍ଣ୍ଣ ହୋଇ ଆମ୍ବେଦକର ଦଳିତମାନଙ୍କ ପାଇଁ ବହୁ ସାମ୍ବିଧାନିକ ଅଧିକାର ହାସଲ କରିଥିଲେ ।

ଆମ୍ବେଦକର ଓ ମଧୁସୂଦନ ଯେପରି ଗୋଟିଏ ଉପାଦାନରେ ଗଢ଼ା ହୋଇଥିଲେ ଏବଂ ଏକନିଷ୍ଠ

ସଂକଳ୍ପବଦ୍ଧତା ସହ ଆପଣାର ଲକ୍ଷ୍ୟ ପ୍ରାପ୍ତି ପାଇଁ ଜୀବନବ୍ୟାପୀ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ । ଆମ୍ବେଦକର ଓ ମଧୁସୂଦନ ଦଳିତ ଜାତିର ଉନ୍ନତି କଳ୍ପେ ନିଜର ଜୀବନକୁ ଉତ୍ସର୍ଗ କରିଥିଲେ । ଦଳିତମାନଙ୍କ ବିକାଶ ପାଇଁ ମଧୁସୂଦନଙ୍କ ଦ୍ୱାରା ପ୍ରତିଷ୍ଠିତ ଅନେକ ପ୍ରକଳ୍ପକୁ ମହାତ୍ମାଗାନ୍ଧୀ ପରିଦର୍ଶନ କରିଥିଲେ ଏବଂ ପରେ ମଧୁସୂଦନଙ୍କୁ ନିଜର ଅନ୍ୟତମ ମାର୍ଗଦର୍ଶକ ରୂପେ ଗ୍ରହଣ କରିଥିଲେ ।

ସେ ୩.୯.୧୯୩୪ରେ 'ହରିଜନ' ପତ୍ରିକାରେ ପ୍ରକାଶିତ ଏକ ନିବନ୍ଧରେ ଲେଖିଥିଲେ 'ମଣିଷ ସମାଜର ଗୋଟିଏ ଭାଗ ପ୍ରତି ଯେଉଁ ନିର୍ଘାତ ଅପରାଧ କରାଯାଉଛି ତାର ନିବାରଣକୁ ନେଇ ସ୍ୱର୍ଗତ ମଧୁସୂଦନ ଦାସ ମୋର ଆଖି ଖୋଲି ଦେଇଥିଲେ । ଉଚ୍ଚଜାତିର ଲୋକେ ତଳ ଜାତିର ଲୋକଙ୍କ ଉପରେ ଯେଉଁ ଅତ୍ୟାଚାର କରି ଆସୁଛନ୍ତି ତାର ପ୍ରାୟଶ୍ଚିତ ପାଇଁ ସେ (ମଧୁବାବୁ)ଗୋଟିଏ ଶିକ୍ଷାମୂଳକ ଟ୍ୟାନେରି ଖୋଲିଥିଲେ ।'

ଆମ୍ବେଦକର ଦଳିତମାନଙ୍କ ଉନ୍ନତି ପାଇଁ ସମର୍ପିତ ନିଜ ଜୀବନର ମୂଲ୍ୟାୟନ କରି ଜୀବନର ଅନ୍ତିମ ବର୍ଷରେ ୧୯୫୭ସାଲରେ ଲେଖିଥିଲେ 'ମୋଜେସ୍ ଯେପରି ତାଙ୍କର ଅନୁଗାମୀ ଜନ ସମ୍ପ୍ରଦାୟକୁ ପାଲେଷ୍ଟାଇନରେ ଆଶ୍ରୟ ପ୍ରଦାନ କରିଥିଲେ, ସେଇଭଳି ମୁଁ ଦଳିତମାନଙ୍କୁ ସ୍ୱାଧୀନତା ପ୍ରଦାନ କରି ସେମାନଙ୍କୁ ନିର୍ଯାତନାରୁ ମୁକ୍ତ କରିଛି ।' ମଧୁସୂଦନ ଓଡ଼ିଆମାନଙ୍କ ପାଇଁ ଏହିଭଳି ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ମଧ୍ୟ ସେ ପ୍ରଚାର ବିମୁଖ ଥିବାରୁ ନିଜ ସମ୍ପର୍କରେ ନୀରବ ରହିଥିଲେ । ମାତ୍ର ୪.୨.୧୯୩୪ରେ ତାଙ୍କର ତିରୋଧାନରେ ଓଡ଼ିଶା ଡିଭିଜନର କମିଶନର ଇ.ଏସ୍.ହରନେଲଙ୍କର ଏହିଭଳି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ,-

'ପର୍ବତର ଶିଖର ଦେଶରେ ଠିଆହୋଇ ମୋଜେସ୍ ଯେପରି ତାଙ୍କର ପଦଦଳିତ ଓ ନିଷ୍ପେଷିତ ବଂଶଧରଙ୍କର ଭବିଷ୍ୟତର ବାସଭୂମିକୁ ଅପଲକ ଦୃଷ୍ଟିରେ ଦେଖୁ ଦେଖୁ ଏ ସଂସାରରୁ ବିଦାୟ ନେଇଥିଲେ, ମଧୁସୂଦନ ସେହିପରି ନୂତନ ସମ୍ଭାବନାମୟ ସ୍ୱତନ୍ତ୍ର ପ୍ରଦେଶ ଗଠନର ପ୍ରାକ୍‌କାଳରେ ସଂସାରରୁ ବିଦାୟ ନେଇ ଚାଲିଗଲେ ।'

ପ୍ରକୃତରେ ଅନବଦ୍ୟ ଏହି ମନିଷୀମାନଙ୍କ ଅବଦାନ । ନିଜ ନିଜ ନିଷ୍ପେଷିତ ଜାତିର ବିକାଶ ପାଇଁ ସେମାନେ କରି ଯାଇଥିବା ତ୍ୟାଗ ଆଜିବି ଦେଶବାସୀଙ୍କୁ ଉଦ୍‌ବେଳିତ କରେ ।

('ସମଦୃଷ୍ଟି'-୧-୧୫ ଅକ୍ଟୋବର-୨୦୦୭)







# ଆଦ୍ୟ ସମାଜବାଦୀ ଅଗ୍ରନାୟକ

ଦେଶର ନବ ଜାଗରଣରେ ମହାନ ଜାତୀୟତାବାଦୀ ନେତାରୂପେ ପ୍ରତିଷ୍ଠା ଲାଭ କରିଥିବା ଜାତୀୟ ଗୌରବ ମଧୁସୂଦନ ଦାସ ହେଉଛନ୍ତି ଭାରତର ପ୍ରଥମ ଭାଷାଭିତ୍ତିକ ପ୍ରଦେଶ 'ଓଡ଼ିଶା'ର ନିର୍ମାତା ମଧୁସୂଦନ ଦାସଙ୍କର ଜନ୍ମ ହୋଇଥିଲା, ବିଶ୍ୱ ଘଟଣାପ୍ରବାହର ଏକ ସ୍ମରଣୀୟ ବର୍ଷ ୧୮୪୮ ସାଲରେ । ଯେଉଁବର୍ଷ ସମାଜବାଦୀ ଚିନ୍ତାଧାରାର ଆଦ୍ୟସ୍ଫୁରଣ ରୂପରେ ରଚିତ ହୋଇଥିବା କମ୍ୟୁନିଷ୍ଟ ମେନିଫେଷ୍ଟୋ । ତାହାଙ୍କର ତିରୋଧାନ ଘଟିଥିଲା ଏହାର ଛୟାଅଶୀ ବର୍ଷର ଅନ୍ତରାଳରେ । ଅନ୍ୟ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ବର୍ଷ ୧୯୩୪ ସାଲରେ, ଯେଉଁ ବର୍ଷ ଭାରତର ଭୂମିରେ କଂଗ୍ରେସ ସମାଜବାଦୀ ଦଳର ଅଭ୍ୟୁଦୟ ଘଟିଲା । ଆଶ୍ଚର୍ଯ୍ୟ ଲାଗେ ଏହି ମଧ୍ୟବର୍ତ୍ତୀ ୮୬ବର୍ଷ କାଳ ଭାରତରେ ସମାଜବାଦୀ ଚିନ୍ତାଧାରା ଏକପ୍ରକାର ଅଜ୍ଞାତ ରହିଥିବାବେଳେ ଦେଶର ଏକ ନିଭୃତ କୋଣରେ ଓଡ଼ିଶାର ମଧୁସୂଦନ ଦାସଙ୍କ ମଧ୍ୟରେ ଏହାର ପରିପ୍ରକାଶ ଥିଲା କେତେ ସ୍ୱତଃସ୍ଫୁର୍ତ୍ତ, ଅବାରିତ ଆଉ ପ୍ରତିଶ୍ରୁତିବଦ୍ଧ । ତେଣୁ ପଣ୍ଡିତ ନେହେରୁଙ୍କ ଭାଷାରେ, ମଧୁସୂଦନ ଭାରତର ସାମାଜିକ ଆଉ ଅର୍ଥନୈତିକ ଉତ୍‌ଥାନ ଲାଗି ମାର୍ଗଦର୍ଶୀ ପ୍ରକଳ୍ପମାନ ସ୍ଥାପନ କରିଥିଲେ ।

ଆଉ ମହାତ୍ମାଗାନ୍ଧୀ ୨୫.୩.୧୯୩୮ରେ ମଧୁସୂଦନ ଦାସଙ୍କର ଗୂଢ଼ ସମାଜତାତ୍ତ୍ୱିକ ଦର୍ଶନ ଉପରେ ଆଲୋକପାତ କରିବାକୁ ଯାଇ ଡେଲାଙ୍ଗଠାରେ କହିଥିଲେ,'ମଧୁସୂଦନ ଦାସଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ ଅଭିବ୍ୟକ୍ତି ହେଲା-'ମଣିଷ ଓ ପଶୁମାନଙ୍କ ମଧ୍ୟରେ ମୁଖ୍ୟ ବିଭେଦ ହେଉଛି ଶାରୀରିକ ଗଠନ ପ୍ରଣାଳୀ । ମଣିଷ ତାହାର ହସ୍ତ ଓ ପାଦରେ ରହିଥିବା ଅଙ୍ଗୁଳିଗୁଡ଼ିକୁ ବିଚକ୍ଷଣ ବୁଦ୍ଧିର ପ୍ରୟୋଗ ମାଧ୍ୟମରେ ଅତ୍ୟନ୍ତ କଳାତ୍ମକଭାବରେ ବ୍ୟବହାର କରିପାରେ ।'

ଏହିଠାରେ ହିଁ ରହିଛି ସମାଜବାଦୀ ଅଥବା ମାର୍କ୍ସବାଦୀ ଦର୍ଶନର ମୂଳ ଭିତ୍ତିଭୂମି । ସମଗ୍ର ବିଶ୍ୱରେ ମଣିଷ ହେଉଛି ଏକମାତ୍ର ପ୍ରାଣୀ, ଯାହାମଧ୍ୟରେ ସନ୍ନିବେଶିତ ହୋଇ ରହିଛି ଅନ୍ତର୍ନିହିତ ସର୍ଜନାତ୍ମକ ସୃଷ୍ଟିଶକ୍ତି । ସେ ଏହାକୁ ତାହାର ହାତ ଆଉ ପାଦର ବିଚକ୍ଷଣ ପ୍ରୟୋଗ ମଧ୍ୟରେ ବିଶ୍ୱର ସୃଷ୍ଟି

ପଦାର୍ଥମାନଙ୍କର ଉପରେ ଆରୋପିତ କରି, ସମାଜ ପାଇଁ ଆବଶ୍ୟକ ଥିବା ପ୍ରୟୋଜନୀୟ ବସ୍ତୁମାନ ସୃଷ୍ଟିକରେ । ମନୁଷ୍ୟ ସମାଜର ଏକ ଅଂଶ ରୂପେ, ଜଣେ ମଣିଷକୁ ତାହାର ଆବଶ୍ୟକତା ଅନୁଯାୟୀ ଏହି ବସ୍ତୁମାନ ଲଭ୍ୟ ହେବା ଆବଶ୍ୟକ । ମାତ୍ର ସଭ୍ୟତାର ଅଗ୍ରଗତି ମଧ୍ୟରେ ପୁଞ୍ଜିବାଦୀ ଶୋଷଣ ପ୍ରକ୍ରିୟାରେ ଜଣେ ଉତ୍ପାଦକ ମଣିଷଠାରୁ ତାହାର ଉତ୍ପାଦିତ ବସ୍ତୁ ସବୁ ବିଚ୍ୟୁତ ଅଥବା ବର୍ଜିତ ହୋଇଥାଏ । ଫଳରେ ସେ ଶୋଷିତହୋଇ ବସ୍ତୁରେ ପରିଣତ ହୋଇଯାଏ ।

ମଧୁସୂଦନ ଦାସଙ୍କର ଅବିଚ୍ଛେଦ୍ୟ ସମ୍ପର୍କ ରହିଥିଲା ମଣିଷର ଏହି ଶୋଷଣବିହୀନ ସର୍ଜନାତ୍ମକ ପ୍ରକ୍ରିୟା ସହିତ । ମହାତ୍ମାଗାନ୍ଧୀ ୨୨.୧.୧୯୩୭ରେ ସେବାଶ୍ରମଠାରେ ଆହୂତ ଶିକ୍ଷା ସମ୍ମିଳନୀରେ ପ୍ରକାଶ କରିଥିଲେ, 'ମଧୁସୂଦନ ଦାସଙ୍କର ଦୃଢ଼ବିଶ୍ୱାସ ଥିଲା ଯେ, ଆମ୍ଭମାନଙ୍କର ହସ୍ତ ଓ ପଦଗୁଡ଼ିକ ବିଧିବଦ୍ଧ ଭାବେ ଯଦି ସଞ୍ଚାଳିତ ଆଉ ନିୟୋଜିତ ହୁଏ, ତା'ହେଲେ ମଣିଷର ମସ୍ତିଷ୍କ ସ୍ଥାଣୁ ଅଥବା ନିର୍ବେଦ ପାଲଟିଯିବ ...ଋଷି ଟଲଷ୍ଟୟ ତାଙ୍କର ବହୁ କାହାଣୀ ମାଧ୍ୟମରେ ଏହି ତଥ୍ୟକୁ ହିଁ ଉଦ୍‌ଭାସିତ କରିଛନ୍ତି ।

ଏଥିରେ ରହିଛି ହସ୍ତ ଆଉ ପଦର ସଂଯୋଗରେ ସର୍ଜନାତ୍ମକ କ୍ରିୟା ମାଧ୍ୟମରେ ମଣିଷର ସର୍ବାଙ୍ଗୀନ ବିକାଶର ସ୍ୱରୂପ ଯାହା ସମାଜବାଦ ଅଥବା ସର୍ବୋଦୟର ଆଧାରଶିଳା ଅଟେ । ବହୁ ବିଚିତ୍ରତା ଓ ବିବିଧତା ମଧ୍ୟରେ ଏହିସବୁ କାର୍ଯ୍ୟକ୍ରମ ରୂପାୟିତ ହୋଇଥିଲା ମଧୁସୂଦନଙ୍କର କର୍ମଶାଳାରେ ।

ସାଗର ବକ୍ଷରେ ଭାସମାନ ବରଫଖଣ୍ଡର ନିମଜ୍ଜିତ ବୃହଦାଂଶ ଲୁକ୍କାୟିତ ହୋଇ ରହିଥିଲା ପରି ମଧୁସୂଦନଙ୍କର ସବୁ ଦିଗନ୍ତକୁ ପ୍ରସାରିତ ପରିବ୍ୟାପ୍ତ ବ୍ୟକ୍ତିତ୍ୱର ଏହିସବୁ ଉପଲବ୍ଧି ହେଉଛି ଏକ ଅନାଲୋଚିତ ଦିଗ ।

ସୂର୍ଯ୍ୟାସ୍ତ ଆଇନ ବଳରେ ଜମିଦାରୀ ଉଚ୍ଛେଦ ହୋଇଯାଇଥିବା ଗୋଟିଏ କ୍ଷୟିଷ୍ଣୁ ପରିବାରରେ, ଗ୍ରାମ ଗହଳରେ ମଧୁସୂଦନ ଦାସ ଜନ୍ମଗ୍ରହଣ କରିଥିଲେ । ଜନ୍ମବେଳକୁ ତାହାଙ୍କର ଅସ୍ତାବଳରେ କିଛି ଘୋଡ଼ା ପ୍ରତିପାଳିତ ହେଉଥିଲେ ମଧ ଅଶ୍ୱର ପୃଷ୍ଠରେ ନୁହେଁ, ତାହାଙ୍କର ପଦ ପ୍ରୋଥିତ ହୋଇ ଯାଇଥିଲା ଗ୍ରାମ ଗହଳର ଉତ୍ପାଦନ ସର୍ବସ୍ୱ ମାଟିରେ । ସେହିମାଟି ସମଗ୍ର ଭାରତରେ ଗ୍ରାମଗହଳକୁ ହିଁ ସୂଚିତ କରୁଥିଲା । ଆବାଲ୍ୟରୁ ସହରରେ ପ୍ରତିପାଳିତ ମହାତ୍ମାଗାନ୍ଧୀ ଅଥବା ପଣ୍ଡିତ ନେହେରୁଙ୍କ ପରି ଜନନାୟକଗଣ ପରିଦର୍ଶକ ଅଥବା ପରିବ୍ରାଜକ ପରି ଗ୍ରାମଗହଳକୁ ଅଧ୍ୟୟନର କ୍ଷେତ୍ର ରୂପେ ବାଛି ନେଲା ପରି ନୁହେଁ, ମଧୁସୂଦନ ଦାସ ଆବାଲ୍ୟରୁ ସିଧାସଳଖ ମୁହାଁମୁହିଁ ଭାବେ ଗ୍ରାମଗହଳର ସ୍ଥିତି ସମ୍ପର୍କରେ କେବଳ ପରିଚିତ ନଥିଲେ, ସେ ଏହା ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତହୋଇ ରହିଥିଲେ ।

ଅର୍ଥନୈତିକ ଦୃଷ୍ଟିରୁ ଅନ୍ତଃସାରଶୂନ୍ୟ, ଦୁର୍ଭିକ୍ଷର କରାଳ ଗ୍ରାସରେ କଙ୍କାଳସାର ଓଡ଼ିଶାର ଜନଗୋଷ୍ଠୀ ମଧ୍ୟକୁ ୧୮୮୧ରେ ମଧୁସୂଦନ ଫେରିଲା ପରେ, ଏ ରାଜ୍ୟର ଦାରୁଣ ଦୁର୍ଗତି ତଥା ମର୍ମନ୍ତୁଦ ଅବସ୍ଥା ତାହାଙ୍କୁ ଆକ୍ରାନ୍ତ ଆଉ ଆଚ୍ଛନ୍ନ କରି ରଖିଥିଲା । ୧୧.୨. ୧୮୮୮ରେ ଲବଣକର ବୃଦ୍ଧି ବିରୋଧରେ କଟକର ବିରାଟ ଜନସଭାରେ ତାହାଙ୍କର ଜ୍ୱାଳାମୟୀ ଭାଷଣ, ବ୍ରିଟିଶ





ଉପନିବେଶବାଦର ତୀବ୍ର ନିଷ୍ପେଷଣକୁ ସୂଚିତ କରୁଥିଲା, ଯାହାର ପ୍ରଚଣ୍ଡ ଆଘାତରେ ସମସ୍ତ ଗ୍ରାମ୍ୟ ଶିଳ୍ପ ବିଧ୍ୱସ୍ତ ହୋଇଯାଇଥିଲା । କିଛିବର୍ଷ କାଳ ଗଭୀର ଅନ୍ତର୍ଦାହର ତୀବ୍ର ଜ୍ୱାଳାରେ ଜର୍ଜରିତ ହୋଇ ୧୮୯୨ରେ ମଧୁସ୍ମୃତିକୁ ଆସିଲାପରେ ତାହାଙ୍କର ସମ୍ମୁଖରେ ସମାଧାନର ସୀମାହୀନ ଦିଗନ୍ତ ଉନ୍ମୋଚିତ ହୋଇ ଯାଇଥିଲା । ହଁ ସେହି ସମାଧାନର ଚକ୍ରବାଳରେ ଉଦିତ ହୋଇଥିଲେ ସ୍ୱଦେଶୀ ଶିଳ୍ପାୟନରୂପୀ ମୁକ୍ତିର ସୂର୍ଯ୍ୟ । ସ୍ୱଦେଶୀ ଶିଳ୍ପାୟନ ଓ ସ୍ୱାବଲମ୍ବନ ଗୋଟିଏ ମୁଦ୍ରାର ଦୁଇଟିପାଖ ଥିଲେ । ସମସ୍ତ ସମାଜକୁ ଏହି ମୁକ୍ତି ମନ୍ତ୍ରରେ ଦୀକ୍ଷିତ କରିବା ପୂର୍ବରୁ ଏହାର ପରୀକ୍ଷା ଓ ନିରୀକ୍ଷା ନିଜଠାରୁ ହିଁ ଆରମ୍ଭ କରିଥିଲେ । ତାହାଙ୍କର ସମସ୍ତ ବସ୍ତୁ ସ୍ୱଦେଶୀ ହେବାପଛରେ, ପ୍ରଥମେ ପାଦରେ ପିନ୍ଧୁଥିବା ଜୋତାକୁ ହିଁ ଚିହ୍ନିତ କରିଥିଲେ । ଏହାର ସର୍ବୋତ୍ତମ ଉତ୍ପାଦନର ସୂତ୍ରର ଅନ୍ୱେଷଣରେ ସେ ପରିବ୍ରାଜକ ରୂପେ ଘୁରି ବୁଲିଥିଲେ ଚର୍ମକାର ଅଧ୍ୟୁଷିତ ବସ୍ତି ସବୁ । ଆଉ ଚାରୋଟି ଚର୍ମକାରଙ୍କୁ ନିଜର ପରିବାର ଅଙ୍ଗୀଭୂତ କରି, ମଧୁସ୍ମୃତିରେ ବସତି ପ୍ରଦାନ କରିଥିଲେ । ୧୮୯୨ରୁ ଆରମ୍ଭ ହୋଇଥିବା ଅବାରିତ ଯାତ୍ରା ଲମ୍ବି ଯାଇଥିଲା ୧୯୦୨ସାଲ ଯାଏଁ ଯେଉଁ ବର୍ଷ ତାହାଙ୍କର ବ୍ୟବହୃତ ସମସ୍ତବସ୍ତୁ ସ୍ୱଦେଶୀରେ ପରିଣତ ହୋଇଥିଲା । କ୍ରାନ୍ତିକାରୀ ଏହି ଯାତ୍ରା ପଥରେ ୧୯୦୦ ସାଲରେ ଉନ୍ନତ ଚରଖାର ଉଦ୍ଭାବନ ଆଉ ୧୯୦୧ସାଲରେ ଫ୍ଲାଇ ସଟଲ ତନ୍ତ ସାହାଯ୍ୟରେ ତ୍ୱରିତ ବୟନ ପ୍ରଣାଳୀର ଉପସ୍ଥାପନ ମାଧ୍ୟମରେ ନିଜର ଅଭିଳାଷକୁ ପୂର୍ଣ୍ଣ କରିପାରିଥିଲେ । ବ୍ୟବହାର ପାଇଁ ଗ୍ରାମୀଣ କାରିଗରଙ୍କର ମାଧ୍ୟମରେ ସମସ୍ତ ସ୍ୱଦେଶୀ ବସ୍ତୁ ଉପଲବ୍ଧ କରିସାରିଲା ପରେ ବିଦେଶୀ ବର୍ଜନ ଆଉ ସ୍ୱଦେଶୀ ଉତ୍ପାଦନ ଓ ବ୍ୟବହାରର ସଙ୍କଳ୍ପବଦ୍ଧ ଶପଥ ଗ୍ରହଣ ପାଇଁ ସେ ଗ୍ରାମ ଆଉ ଜନପଦରେ ଘୁରି ବୁଲିଥିଲେ । ଏ ସମସ୍ତ ଥିଲା ବ୍ରିଟିଶ ଉପନିବେଶବାଦର ନିଷ୍ପେଷଣ ବିରୋଧରେ ଏକ ଅଘୋଷିତ ମୁକ୍ତି ସଂଗ୍ରାମ । ସ୍ୱାବଲମ୍ବନ ଥିଲା ଏହାର ମୂଳ ଭିତ୍ତିଭୂମି । ମଧୁସୂଦନଙ୍କର ଭାଷାରେ 'ଯେଉଁ ହାତରେ ଜଣେ ରୁଟିଖାଏ, ସେହି ହାତରେ ହିଁ ତାହାକୁ ରୁଟିର ଉପାର୍ଜନ କରିବାକୁ ପଡ଼ିବ ।' (୧୯୨୪ରେ ପାଟନାଠାରେ ପ୍ରଦତ୍ତ ଭାଷଣ)

ମଧୁସୂଦନ ଦାସ ୧୮୯୭ସାଲରେ ସୁଦୀର୍ଘ ନଅମାସ ଧରି ଇଂଲଣ୍ଡ ସମେତ ୟୁରୋପର ପ୍ରମୁଖ ଦେଶଗୁଡ଼ିକ ଜଣେ ଅନୁସନ୍ଧିତ୍ସୁର ଜିଜ୍ଞାସା ନେଇ ପରିଭ୍ରମଣ କରିଥିଲେ । ସେହି ଦେଶସମୂହର ସମ୍ବିଧାନ,ଲୋକତନ୍ତ୍ର,ପ୍ରଶାସନ,କ୍ରାନ୍ତିକାରୀ ଉଦ୍ୟୋଗର ସ୍ୱୟଂଶାସିତ ସଂସ୍ଥା ଆଉ ପ୍ରଗତିଶୀଳ ଜନଜାଗରଣର ବିଭିନ୍ନ ପର୍ଯ୍ୟାୟ (ବୋଧହୁଏ ସମାଜବାଦ ମଧ୍ୟ) ଅଧ୍ୟୟନ କରିଥିଲେ, ଯାହା ତାଙ୍କର ଚେତନାର ଦିଗନ୍ତକୁ ପଦକ୍ଷେପରୂପେ ଚିହ୍ନିତ ଓୟେନଙ୍କର ସମବାୟ ଜନ ସମ୍ପ୍ରଦାୟର ଆଧାରରେ, ୧୮୯୮ସାଲରେ କଟକ କୋ-ଅପରେଟିଭ୍ ଭଣ୍ଡାର(ଯାହା ସମଗ୍ର ଭାରତରେ ପ୍ରଥମ ସମବାୟଭିତ୍ତିକ ଉଦ୍ୟୋଗ) ସ୍ଥାପନକରି କ୍ଷୁଦ୍ର କୃଷିଜୀବୀଙ୍କୁ ଋଣଦାନ ମାଧ୍ୟମରେ, ଯୁକ୍ତିଯୁକ୍ତ ମୂଲ୍ୟରେ ସେମାନଙ୍କଠାରୁ ପଣ୍ୟ ସଂଗ୍ରହ ତଥା କଟକର ନିମ୍ନବର୍ଗ ବ୍ୟକ୍ତିଙ୍କ ମଧ୍ୟରେ ସୁଲଭ ମୂଲ୍ୟରେ ବିକ୍ରୟର ବ୍ୟବସ୍ଥା କରିଥିଲେ । ଆଲୋଚନାକୁ ଏହିଠାରେ ଅସମାପ୍ତ ରଖି, ଚାଲନ୍ତୁ ଯିବା ୧୯୩୪ସାଲର ଭାରତର ଦୃଶ୍ୟପଟକୁ । ସେହିବର୍ଷ ନାସିକ ଜେଲ୍‌ରେ ଆବଦ୍ଧ ତରୁଣ ଦେଶବତ୍ସଳ ଯୁବ ନେତୃବୃନ୍ଦ,

ଯେପରିକି ଜୟପ୍ରକାଶ ନାରାୟଣ, ଅଶୋକ ମେହେଟ୍ଟା, ଅଚ୍ୟୁତ ପଟ୍ଟବର୍ଦ୍ଧନ ଆଦି ବନାରସର ଆଚାର୍ଯ୍ୟ ନରେନ୍ଦ୍ର ଦେବ ପ୍ରମୁଖଙ୍କ ସହ ସମ୍ମିଳିତ ହୋଇ ମଇମାସରେ ପାଟନାଠାରେ କଂଗ୍ରେସ ସମାଜବାଦୀ ଦଳ ଗଠନ କରିଥିଲେ । ଆଉ ଅକ୍ଟୋବର ମାସରେ ବମ୍ବେଠାରେ ସ୍ୱରାଜ ପ୍ରାପ୍ତିଲାଗି ଯେଉଁ ସମାଜବାଦୀ କାର୍ଯ୍ୟକ୍ରମର ଚିଠା ପ୍ରସ୍ତୁତ କରିଥିଲେ, ତାହାମଧ୍ୟରେ ସରକାରଙ୍କ ନିଜସ୍ୱ ଆଧାରିତ କାର୍ଯ୍ୟକୁ ବାଦଦେଇ, ଯେଉଁ କାର୍ଯ୍ୟକ୍ରମ ଦେଶବାସୀଙ୍କ ପାଇଁ ଉଦ୍ଦିଷ୍ଟ ଥିଲା, ସେ ସମସ୍ତ ହେଲା ଜମିଦାରୀ ଓ ଗଡ଼ଜାତ ପ୍ରଥାର ଉଚ୍ଛେଦ, କୃଷକକୁ ଭୂମି ଉପରେ ଅଧିକାର ପ୍ରଦାନ, ସମବାୟ ମାଧ୍ୟମରେ କୃଷି, ଉତ୍ପାଦନ ଓ ବଣ୍ଟନ, ପ୍ରତ୍ୟେକ ବ୍ୟକ୍ତିଙ୍କୁ କର୍ମସଂସ୍ଥାନ ଏବଂ ନାରୀ ଜାତିକୁ ଅଧିକାର ପ୍ରଦାନ । ସମାଜବାଦୀ ଯୁବ ନେତୃବୃନ୍ଦ ଏ ସମସ୍ତକୁ ଜନଜାଗରଣ ଓ ଗଣ ଆନ୍ଦୋଳନ ମଧ୍ୟରେ ହାସଲ କରିବାକୁ ସେମାନଙ୍କର ଲକ୍ଷ୍ୟ ରଖିଥିଲେ । ମାତ୍ର ଆଶ୍ଚର୍ଯ୍ୟଲାଗେ ମଧୁସୂଦନ ଦାସ ପ୍ରାୟ ୧୯୧୫ସାଲ ବେଳକୁ ଏହି ସମସ୍ତ କାର୍ଯ୍ୟକ୍ରମରେ କେବଳ ସକ୍ରିୟ ଅଂଶଗ୍ରହଣ କରି ନଥିଲେ, ଏହି କାର୍ଯ୍ୟକ୍ରମ ସମସ୍ତରେ ସନ୍ନିବେଶିତ ମୁଖ୍ୟ ଉତ୍ପାଦନ ଜଡ଼ିତ ପ୍ରକ୍ରିୟାରେ ଆକଣ୍ଠ ନିମଜ୍ଜିତ ରହୁଥିଲେ । ଯେପରି ଜଣେ ନର୍ତ୍ତକ ବା ନୃତ୍ୟାଙ୍ଗନା, ନୃତ୍ୟର ଆଙ୍ଗିକ ରୂପ, ବିଭିନ୍ନ ମୁଦ୍ରା, ତାଳ, ପଦବିନ୍ୟାସର ସମସ୍ତ କୌଶଳ ଆଭରଣ କରି ସାରିଲା ପରେ, ଅଚିରେ ନୃତ୍ୟର ଅଙ୍ଗନକୁ ଓହ୍ଲାଇ ପଡ଼େ ବିସ୍ତାରିତ ନୃତ୍ୟ ପ୍ରଦର୍ଶନ ପାଇଁ, ସେହିପରି ମଧୁସୂଦନ ଦାସଙ୍କର ନିଜସ୍ୱ ତୀକ୍ଷ୍ଣ ନିରୀକ୍ଷଣ ଆଉ ଆତ୍ମ ଉପଲବ୍ଧି ଏତେ ପ୍ରଖର ଆଉ ତୀବ୍ର ଯେ, ସେ ବିନା କାଳାତିପାତରେ ତତ୍‌କ୍ଷଣାତ ଓହ୍ଲାଇ ପଡ଼ିଥିଲେ ପ୍ରକଳ୍ପ ସବୁର ଆଶୁ ଆଉ ସଫଳ ରୂପାୟନ ପାଇଁ ।

ମଧୁସୂଦନଙ୍କର ସମାଜବାଦୀ କାର୍ଯ୍ୟକ୍ରମ ମଧ୍ୟରେ ଅତ୍ୟନ୍ତ ଉଲ୍ଲେଖନୀୟ ଥିଲା, ପ୍ରଜା ପରିଷଦ (୧୯୦୯)ର ଗଠନ, ଯାହାର ଛତ୍ରଛାୟା ତଳେ ହଜାର ହଜାର କୃଷିଜୀବୀ ସମ୍ମିଳିତ ହୋଇ ସେମାନଙ୍କର ଭୂମି ଉପରେ ସ୍ୱତ୍ତ୍ୱ ଲାଭ କରିବା ପାଇଁ ସଂଗ୍ରାମ କରିଥିଲେ । ୧୯୧୨ସାଲରେ ସେ ଯେଉଁ (ସ୍ମାରକ) ମେମୋରାଣ୍ଡମ୍ ପ୍ରଜାମାନଙ୍କ ପକ୍ଷରୁ ଦାଖଲ କରିଥିଲେ, ତାହା ପ୍ରଜାଙ୍କର ଅଧିକାର ପ୍ରଦାନ କ୍ଷେତ୍ରରେ ସର୍ବୋତ୍ତମ ଦଲିଲ ଥିଲା, ଯାହା ବିନା କ୍ଷତିପୂରଣରେ ଜମିଦାର ପ୍ରଥା ଉଚ୍ଛେଦ ଲାଗି ଅଭିପ୍ରେତ ଥିଲା । ମଧୁସୂଦନଙ୍କର ସମସ୍ତ ପ୍ରତିବାଦ ସତ୍ତ୍ୱେ ବଙ୍ଗ କାଉନସିଲରେ ପ୍ରଜାମାନଙ୍କର ଶୋଷଣ ଲାଗି ଉଦ୍ଦିଷ୍ଟ ଓଡ଼ିଶା ପ୍ରଜାସତ୍ତ୍ୱ ବିଲ୍ ପ୍ରଣୀତ ହେବା ପରେ ମଧୁସୂଦନଙ୍କର ଚେତାବନୀ ପ୍ରଦାନ ଯୋଗୁଁ ବଡ଼ଲାଟ ଲର୍ଡ଼ ହାର୍ଡିଞ୍ଜ୍, ଏହି ବିଲ୍‌କୁ ମଞ୍ଜୁରୀ ପ୍ରଦାନ କରିନଥିଲେ । ଏହା ଥିଲା ପାର୍ଲାମେଣ୍ଟାରୀ ଇତିହାସରେ ଏକ ବିରଳ ବ୍ୟତିକ୍ରମ । ୧୯୧୫ରେ ମଧୁସୂଦନ ଗଡ଼ଜାତ ଉଚ୍ଛେଦ କରିବା ଲାଗି ତାହାଙ୍କର ଦୃଢ଼ଦାବୀ ଉପସ୍ଥାପନ କରିଥିଲେ ।

କଲିକତାରେ ପ୍ରଥମ ଶ୍ରମିକ ୟୁନିଅନ ୧୮୭୦ରେ ପ୍ରତିଷ୍ଠିତ ହୋଇଥିଲା । ଏହାର ମାତ୍ର ପାଞ୍ଚବର୍ଷ ପରେ ମଧୁସୂଦନ ମାଟିଆ ବରୁଜ୍‌ରେ ଶ୍ରମିକଙ୍କ ଲାଗି ଏକ ନୈଶ୍ୟ ବିଦ୍ୟାଳୟ ଓ ୟୁନିୟନର ସ୍ଥାପନା କରିଥିଲେ । କଲିକତାରେ ପରବର୍ତ୍ତୀ କାଳରେ ବୃହତ ଶ୍ରମିକ ୟୁନିଅନର ସ୍ଥାପନା ସହିତ ୧୯୨୯ରୁ ୧୯୩୧ମଧ୍ୟରେ ମଧୁସୂଦନ ନେତାଜୀ ସୁବାଷ ବୋଷଙ୍କର ସାହଚର୍ଯ୍ୟରେ ଜାମସେଦପୁରଠାରେ ଶ୍ରମିକମାନଙ୍କୁ ୟୁନିୟନ ଗଠନ ମାଧ୍ୟମରେ ସମ୍ମିଳିତ କରିଥିଲେ । ମଧୁସୂଦନ





ସମସ୍ତ କ୍ଷେତ୍ରରେ ନାରୀଙ୍କୁ ଅଧିକାର ପ୍ରଦାନ କ୍ଷେତ୍ରରେ ପ୍ରତିଶ୍ରୁତିବଦ୍ଧ ଥିଲେ । କଟକରେ ପ୍ରଥମ ମହିଳା ମହାବିଦ୍ୟାଳୟର ପ୍ରତିଷ୍ଠା ପରେ, ମଧୁସୂଦନଙ୍କର ଅବିରାମ ଉଦ୍ୟମ ଫଳରେ ଭାରତୀୟ ନାରୀ ପାଇଥିଲା ଆଇନଜୀବୀ ବୃତ୍ତି ଗହଣର ଯୁଗାନ୍ତକାରୀ ଅଧିକାର, ଦଳିତମାନଙ୍କୁ ଅର୍ଥନୈତିକ ଅଧିକାର । ଦଳିତମାନଙ୍କୁ ଅର୍ଥନୈତିକ କ୍ଷେତ୍ରରେ ଥଇଥାନ କରିବା ପାଇଁ ଏ କ୍ଷେତ୍ରରେ ଦେଶର ସର୍ବବୃହତ ଅନୁଷ୍ଠାନ 'ଉତ୍କଳ ଟେନେରୀ'ର ସ୍ଥାପନା କରିଥିଲେ, ଯାହାର ମାନବୀୟ ମୂଲ୍ୟବୋଧ ମହାତ୍ମାଗାନ୍ଧୀଙ୍କୁ ହତଚକିତ କରିଥିଲା । ମହାତ୍ମାଗାନ୍ଧୀଙ୍କର ଭାଷାରେ 'ସମାଜର ଗୋଟିଏ ଅଂଶ ଉପରେ ଆମେ ଯେଉଁ ଅପରାଧ କରି ଚାଲିଛେ ମଧୁସୂଦନ ଦାସ ସେ ସମ୍ପର୍କରେ ମୋର ଆଖି ଖୋଲି ଦେଇଥିଲେ ।' ମଧୁସୂଦନଙ୍କ ପ୍ରଣୀତ ଆଇନ (୧୯୨୩)ସାଲରେ ସ୍ୱାୟତ୍ତ ଶାସନର ସଂସ୍ଥାମାନଙ୍କରେ ଦଳିତମାନଙ୍କ ପାଇଁ ସ୍ଥାନ ସଂରକ୍ଷିତ ରହିଥିଲା ।

ଏ ସମସ୍ତ ଉପଲବ୍ଧି ସମାଜବାଦୀ କାର୍ଯ୍ୟକ୍ରମର ଉଜ୍ଜ୍ୱଳ କୀର୍ତ୍ତିସ୍ତମ୍ଭ ରୂପେ ବିବେଚିତ ଯାହା ନିଷ୍ପେଷିତଙ୍କୁ ପ୍ରଦାନ କରିଥିଲା, ସ୍ୱାଭିମାନ ସହକାରେ ବଞ୍ଚି ରହିବା ପାଇଁ ସର୍ବନିମ୍ନ ପ୍ରତିଶ୍ରୁତି ।

ପ୍ରାୟ ଏକଶହ ବର୍ଷ ପୂର୍ବେ ଓଡ଼ିଶାର ପ୍ରଥମ ସାଂସଦ (୧୯୧୩-୧୯୧୭)ରୂପେ ଭାରତୀୟ ଇମ୍ପେରିୟାଲ କାଉନସିଲ୍‌ରେ ବ୍ରିଟିଶ ଉପନିବେଶବାଦ ତଥା ୟୁରୋପୀୟ କ୍ରମପ୍ରସାରିତ ଶୋଷଣଭିତ୍ତିକ ଶିଳ୍ପ ସାମ୍ରାଜ୍ୟବାଦ ବିରୋଧରେ ମଧୁସୂଦନ ଦାସ ସେମାନଙ୍କୁ 'ଶକ୍ତ ଶୋଷକ ଦଳ' ବୋଲି ଆଖ୍ୟାୟିତ କରି ଯେଉଁ ସାଲିସବିହୀନ ସଂଗ୍ରାମର ଡାକରା ଦେଇଥିଲେ, ତାହା ଆଜିର ଜଗତୀକରଣ ତଥା ବିଶ୍ୱ ଅର୍ଥାୟନ ଯୁଗରେ, କାଳର କଷଟିରେ ପରୀକ୍ଷିତ ହୋଇ ନିଜସ୍ୱ ଦୀପ୍ତରେ ଜାଜ୍ୱଲ୍ୟମାନ । ଘାତ, ପ୍ରତିଘାତ ଆଉ ସମନ୍ୱୟର କ୍ରମବିକାଶ ଧାରାରେ, ମଣିଷ ସହିତ ପ୍ରକୃତିର ଯେଉଁ ସଂଘାତ ସୃଷ୍ଟି ହୁଏ, ସେ କ୍ଷେତ୍ରରେ ମଧୁସୂଦନଙ୍କର ଶାଣିତ ବକ୍ତବ୍ୟ ଥିଲା-ପ୍ରାଚ୍ୟର କଲ୍ୟାଣମୟୀ ପ୍ରକୃତିକୁ ନିଷ୍ପେଷଣ ମଧ୍ୟରେ ନୁହେଁ, ତାହା ସହିତ ସୌହାର୍ଦ୍ଦ୍ୟପୂର୍ଣ୍ଣ ସହାବସ୍ଥାନ ମଧ୍ୟରେ ଭାରସାମ୍ୟ ରକ୍ଷାକରିବା ବାଞ୍ଛନୀୟ । ଯାହା ଆଜିର ପରିବେଶବିତ୍‌ମାନଙ୍କର ମୂଳ ଆଧାର ରୂପେ ଗୃହୀତ ହୋଇସାରିଛି । ତେଣୁ ଆଜି ବିସ୍ମୟାଭୂତ ହୋଇ ଚାହିଁ ରହିବାକୁ ହୁଏ ଯେ, ସେଇ ଊନବିଂଶ ଶତାବ୍ଦୀର ମଧୁସୂଦନ ଦାସ ଆଜି ଏକବିଂଶ ଶତାବ୍ଦୀର ବିଶ୍ୱ ପ୍ରେକ୍ଷାପଟରେ କିଭଳି ତାତ୍ପର୍ଯ୍ୟପୂର୍ଣ୍ଣ ଆଉ ପ୍ରାସଙ୍ଗିକ ବୋଧ ହେଉଛନ୍ତି ।

ଆଉ ଓଡ଼ିଆମାନଙ୍କ ପାଇଁ ଏହା ଏକାନ୍ତ ଗୌରବର ବିଷୟ ଯେ, ମଧୁସୂଦନ ଦାସ ତାହାଙ୍କର ପରିବ୍ୟାପ୍ତ ସମାଜବାଦ କାର୍ଯ୍ୟକ୍ରମକୁ ଓଡ଼ିଆ ଭାଷାସଂସ୍କୃତି ମୁକ୍ତି ସଂଗ୍ରାମର ଏକ ଅବିଚ୍ଛେଦ୍ୟ ଅଙ୍ଗ ରୂପେ ଗଢ଼ି ତୋଳିଥିଲେ ।

ହଁ ସେ ଥିଲେ ଅଗ୍ରନାୟକ । ଅଥଚ ଆମେ ସତେ ରହିଯାଇଛୁ କେଡ଼େ ନିର୍ବେଦ !

('ସମଦୃଷ୍ଟି'-୧-୧୫ ଡିସେମ୍ବର-୨୦୦୭)



# ମଧୁସୂଦନ ଏବଂ ଶ୍ୱେତ ଆଉ ମାଟିଆ ସାମ୍ରାଜ୍ୟବାଦ

ନବ ଓଡ଼ିଶା ପ୍ରଦେଶ ଗଠନର ଇତିହାସ ଏପର୍ଯ୍ୟନ୍ତ ଯେପରି ଅସଙ୍କଳିତ, ଆଉ ସେହିପରି ରହିଯାଇଛି ସଂଶୟ ବିଜଡ଼ିତ, ଆଉ ରହସ୍ୟାବୃତ୍ତ । ସ୍ୱତନ୍ତ୍ର ଓଡ଼ିଶାର ସ୍ଥାପନା କ୍ଷେତ୍ରରେ ଓଡ଼ିଆମାନଙ୍କୁ ବ୍ରିଟିଶ ପ୍ରଶାସନର ନିର୍ଯାତନା ଆଉ ଶୋଷଣ ବିରୁଦ୍ଧରେ ଯେଉଁପରି ସଂଗ୍ରାମ ସଞ୍ଚାଳିତ କରିବାକୁ ପଡୁଥିଲା, ତାହାଠାରୁ ଅଧିକ ପରିମାଣରେ ସଂଘର୍ଷ ସଂଯୋଜିତ କରିବାକୁ ପଡୁଥିଲା, ପଡ଼ୋଶୀ ପ୍ରଦେଶର ନେତୃବର୍ଗ ବିପକ୍ଷରେ ଯେଉଁମାନେ ତାହାଙ୍କର ଅଧିନରେ ଥିବା ବିଭାଜିତ ଓଡ଼ିଆଭାଷୀ ବିଚ୍ଛିନ୍ନ ଅଞ୍ଚଳକୁ ସେମାନଙ୍କର ବଶମ୍ବଦ ଆଉ ଆଜ୍ଞାବହ ଉପନିବେଶରେ ପରିଣତ କରି ଦାସତ୍ୱର ବନ୍ଧନରେ ନିବର୍ଦ୍ଧ କରିଥିଲା । ନବଓଡ଼ିଶାର ଅନ୍ୟତମ ବିନ୍ଧାଣୀ ଭୁବନାନନ୍ଦ ଦାସ ଏମ୍.ପି.ଙ୍କର ଅନୁଶୀଳନର ଆଧାରରେ ଜାତୀୟଗୌରବ ମଧୁସୂଦନ ଦାସ, ଭାରତୀୟମାନଙ୍କୁ ଅର୍ଥନୈତିକ ଓ ରାଜନୈତିକ ଶୋଷଣରୁ ଉଦ୍ଧାର କରିବା ପାଇଁ, ଶ୍ୱେତାଙ୍ଗ ବ୍ରିଟିଶ ପ୍ରଶାସନର ଶ୍ୱେତ ସାମ୍ରାଜ୍ୟବାଦ ବିପକ୍ଷରେ ଯେପରି ସଂଗ୍ରାମ ସଞ୍ଚାଳିତ କରିଥିଲେ, ସେହିପରି ପଡ଼ୋଶୀ ପ୍ରଦେଶର ମାଟିଆରଙ୍ଗର ଭାରତୀୟ ନେତୃବର୍ଗଙ୍କର ଓଡ଼ିଆଭାଷୀ ଅଞ୍ଚଳକୁ ବିଚ୍ଛିନ୍ନ ଓ ବିଖଣ୍ଡିତ କରି ରଖିବା ପାଇଁ ମାଟିଆ ସାମ୍ରାଜ୍ୟବାଦର ଚକ୍ରାନ୍ତ ବିରୁଦ୍ଧରେ ଜୀବନର ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ସଂଘର୍ଷ ଜାରି ରଖିଥିଲେ ।

ମଧୁସୂଦନ ଦାସ ୧୮୯୮ ସାଲରେ ବ୍ରିଟିଶ ପ୍ରଶାସନର ଶ୍ୱେତ ସାମ୍ରାଜ୍ୟବାଦର ନିଷ୍ପେଷଣର ବିରୁଦ୍ଧରେ ବଙ୍ଗୀୟ ଯୁବକମାନଙ୍କୁ ସରଳା ଦେବୀ ଚୌଧୁରାଣୀ, ବିଭୁତିଭୂଷଣ ଦତ୍ତରାୟ ଆଦିଙ୍କର ମାଧ୍ୟମରେ ଉଗ୍ରବାଦୀ ଭୂମିକାରେ ଅବତୀର୍ଣ୍ଣ କରାଇଥିଲେ, ଯେଉଁମାନଙ୍କ ସହିତ ଋଷି ଶ୍ରୀ ଅରବିନ୍ଦ ପରବର୍ତ୍ତୀ କାଳରେ ବୈପ୍ଳବିକ ଭୂମିକାରେ ସଂଯୋଜିତ ହୋଇଥିଲେ । ସେହିପରି ମଧୁସୂଦନ, ସମଗ୍ର ଭାରତରେ ସର୍ବପ୍ରଥମେ ୧୯୦୦ ସାଲଠାରୁ ବିଦେଶୀ ବର୍ଜନ ଓ ସ୍ୱଦେଶୀ ନିଯୋଜନ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ପଣ୍ଡିତ ନୀଳକଣ୍ଠ ଦାସଙ୍କର ବକ୍ତବ୍ୟ ଅନୁସାରେ ଉଦଗ୍ର ଶପଥ ପାଠ ମାଧ୍ୟମରେ ଦେଶକୁ ଅଭିମନ୍ତ୍ରିତ କରିଥିଲେ । ଏତଦ୍ ବ୍ୟତୀତ ୧୯୧୩ରୁ ୧୯୧୬ ସାଲ ମଧ୍ୟରେ





ମଧୁସୂଦନ, କେନ୍ଦ୍ର ଇମ୍ପେରିୟାଲ କାଉନସିଲର ସଦସ୍ୟ ରୂପେ ବ୍ରିଟିଶ ତଥା ୟୁରୋପୀୟ ଶିଳ୍ପୀକରଣ କାର୍ଯ୍ୟକ୍ରମକୁ ଭାରତର ରକ୍ତ ଶୋଷଣ ପ୍ରକ୍ରିୟା ବୋଲି ବଜ୍ର ନିର୍ଘୋଷ କଣ୍ଠରେ ଆଖ୍ୟାୟିତ କରି, ବହୁ ହଜାର ମାଇଲ ଦୂରରେ କାର୍ଯ୍ୟରତ ୟୁରୋପୀୟ ଶିଳ୍ପ, ଭାରତକୁ ନିଃଶେଷିତ କରୁଥିଲା ବୋଲି ଉଗ୍ର କଟୁକ୍ତି ମାଧ୍ୟମରେ ତିରସ୍କାର କରୁଥିଲେ । ଆଜି ଏକବିଂଶ ଶତାବ୍ଦୀରେ ଅନ୍ୟ ପ୍ରକ୍ରିୟା ମାଧ୍ୟମରେ ବୋଧହୁଏ ଏହାର ପୁନରାବୃତ୍ତି ଆରମ୍ଭ ହୋଇଛି । ଅନ୍ୟପକ୍ଷରେ ୧୮୬୬ସାଲର ନଅଙ୍କ ଦୁର୍ଭିକ୍ଷର କରାଳଗ୍ରାସ ପରେ ଇଂଲଣ୍ଡରେ ଭାରତ ସଚିବ ସାର ଷ୍ଟାଫୋର୍ଡ଼ ନର୍ଥକୋଟ ୨.୮.୧୮୬୬ରେ ବିଖଣ୍ଡିତ ଓଡ଼ିଆ ଭାଷା ଅଞ୍ଚଳର ମିଶ୍ରଣରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସ୍ଥାପନା ପାଇଁ ସ୍ୱୀକୃତି ପ୍ରଦାନ କରିଥିଲେ । ମାତ୍ର ପରବର୍ତ୍ତୀ ପର୍ଯ୍ୟାୟରେ ୧୮୭୪ ସାଲରେ ଆସାମ ଓ ପରେ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ନିରାପତ୍ତାର ସୁରକ୍ଷା ଦୃଷ୍ଟିରୁ ଗଠିତ ହୋଇଥିଲେ ମଧ୍ୟ ପଡ଼ୋଶୀ ପ୍ରଦେଶମାନଙ୍କର ନେତୃବର୍ଗଙ୍କର ତୀବ୍ର ମାଟିଆ ସାମ୍ରାଜ୍ୟବାଦର ବିରୋଧ ଯୋଗୁଁ ଓଡ଼ିଶା ପ୍ରଦେଶର ସ୍ଥାପନା ଆକାଶ କୁସୁମରେ ପରିଣତ ହୋଇଥିଲା । ଏଥିଲାଗି ମଧୁସୂଦନ ୧୮୯୭ସାଲରେ ଲଣ୍ଡନରେ ଭାରତର ସଚିବ ଜର୍ଜ ହାମିଲଟନ୍‌ଙ୍କ ସହିତ ସାକ୍ଷାତ କରିଥିଲେ । ପରେ ୧୯୦୦ ସାଲ ଅକ୍ଟୋବର ତୃତୀୟ ସପ୍ତାହରେ ଭାରତର ବଡ଼ଲାଟ୍ ଲର୍ଡ଼ କର୍ଜନଙ୍କର ସିମଲାଠାରେ ଓ ୧୬.୧୨.୧୯୦୦ରେ ପୁରୀ ଓ ଭୁବନେଶ୍ୱର ମନ୍ଦିର ମାଳିନୀ ନଗରୀରେ ମଧୁସୂଦନଙ୍କର ସହିତ ସାକ୍ଷାତକାର ଓ ପରେ ବହୁବାର ଦାବୀ ଉପସ୍ଥାପନା ଫଳରେ ଭାରତୀୟ ପ୍ରଦେଶର ପୁନର୍ଗଠନ ଓ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ଲାଗି ବଡ଼ଲାଟ ଲର୍ଡ଼ କର୍ଜନ ୩.୧୨.୧୯୦୩ରେ ରିସଲେ ଘୋଷଣାନାମା ନାମକ ଏକ ସର୍କୁଲାର ପ୍ରଚାରିତ କରିଥିଲେ । ଧରଣୀଧର ମିଶ୍ର ଓ ସ୍ୱଭାବକବି ଗଙ୍ଗାଧର ମେହେରଙ୍କର ନେତୃତ୍ୱରେ ଓଡ଼ିଶାର ପଶ୍ଚିମାଞ୍ଚଳ ଭାଷା ସଂଗ୍ରାମର ଭୂମିକା ଏଥିଲାଗି ଅନସ୍ୱୀକାର୍ଯ୍ୟ । ଏହି ସମସ୍ତ ଫଳରେ ୧୬.୧୦.୧୯୦୫ରେ



ସମ୍ବଲପୁର ଜିଲ୍ଲା ଓ ପାଞ୍ଚଗୋଟି ଗଡ଼ଜାତ ମଧ୍ୟପ୍ରଦେଶରୁ, ଆଉ ଅନ୍ୟପକ୍ଷରେ ବିହାର ଛୋଟନାଗପୁର ଡିଭିଜନରୁ ଗାଙ୍ଗପୁର ଓ ବଣେଇ ଗଡ଼ଜାତମାନ ଓଡ଼ିଶା ଡିଭିଜନରେ ମିଶିଥିଲା । ମାତ୍ର ମାଡ୍ରାସ ପ୍ରଦେଶର ଭାରତୀୟ ନେତୃବର୍ଗଙ୍କର ତୀବ୍ର ମାଟିଆ ସାମ୍ରାଜ୍ୟବାଦର ପ୍ରୟୋଗ ଓ ସେହିପରି ମାଡ୍ରାସ ପ୍ରେସିଡ଼େନ୍‌ସିର ବ୍ରିଟିଶ ପ୍ରଶାସନର ଶ୍ୱେତ ସାମ୍ରାଜ୍ୟବାଦର ପ୍ରବର୍ତ୍ତନା ଫଳରେ ନାଗାବଳୀ ନଦୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ବୃହତ୍ ଗଞ୍ଜାମ ଜିଲ୍ଲା ଓ ଜୟପୁର ଜମିଦାରୀର ମିଶ୍ରଣ, ଓଡ଼ିଶା ଡିଭିଜନ ସହିତ ସମ୍ଭବପର ହୋଇନଥିଲା ।

ପରବର୍ତ୍ତୀ ପର୍ଯ୍ୟାୟରେ ମଧୁସୂଦନଙ୍କର ଅଧିନାୟକତ୍ୱରେ ଓଡ଼ିଶାର ଗଡ଼ଜାତ ରାଜ ପ୍ରତିନିଧିଙ୍କର ୧୫.୦୪.୧୯୨୮ରେ ବଟଲାର କମିଟି ସମ୍ମୁଖରେ ବମ୍ବେଠାରେ, ଛୋଟନାଗପୁର ଓଡ଼ିଆ ଗଡ଼ଜାତ ଦ୍ୱୟ ଷଢ଼େଇକଳା ଓ ଖରସୁଆଁର ଓଡ଼ିଶା ସହିତ ମିଶ୍ରଣର ଦାବୀ ଉପସ୍ଥାପନ ପରେ ୧୯୩୩-୩୪ ସାଲରେ ଏହାର ଓଡ଼ିଶା ସହିତ ମିଶ୍ରଣ ହୋଇଥିଲା । ଏହାଛଡ଼ା ମଧୁସୂଦନଙ୍କର ପ୍ରବର୍ତ୍ତନାରେ ବ୍ରଜସୁନ୍ଦର ଦାସ କନିକାର ରାଜା ଓ ଲକ୍ଷ୍ମୀଧର ମହାନ୍ତିଙ୍କ ନେତୃତ୍ୱରେ ଓଡ଼ିଆ ପ୍ରତିନିଧିଦଳଙ୍କର ସାଇମନ୍ କମିଶନଙ୍କ ସହିତ ୧୨.୧୨.୧୯୨୮ ପାଟନା ରେଳଷ୍ଟେସନଠାରେ ଦାବୀ ଉପସ୍ଥାପନା ଓ ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କର ୧୬.୧.୧୯୩୧ରେ ଲଣ୍ଡନଠାରେ ପ୍ରଥମ ଗୋଲଟେବୁଲ ବୈଠକରେ ସାକ୍ଷ୍ୟ ପ୍ରଦାନ ପରେ ୧୮.୯.୧୯୩୧ରେ ସାମୁଏଲ ଓଡେନାଲଙ୍କ ନେତୃତ୍ୱରେ ଓଡ଼ିଶା ପ୍ରଦେଶ ସୀମା ନିର୍ଦ୍ଧାରଣ କମିଟି ଗଠିତ ହେଲା । ଏହି କମିଟିରେ ଓଡେନାଲଙ୍କ ଛଡ଼ା ଏଚ୍.ଏମ୍.ମେହେଟା, ଟି.ଆର୍.ଫୁକନ୍ ସଦସ୍ୟ,ଆଉ ବିହାର ପକ୍ଷରୁ ସଚ୍ଚିଦାନନ୍ଦ ସିହ୍ନା, ମାଡ୍ରାସ ପକ୍ଷରୁ ସି.ଭି.ଏସ୍. ନାରାୟଣ ରାଜୁ, ଓଡ଼ିଶା ପକ୍ଷରୁ ପାରଳା ମହାରାଜା ପ୍ରତିନିଧିତ୍ୱ କରିଥିଲେ । ଏହି କମିଟି ୭.୧୧.୧୯୩୧ରେ ପାଟନାଠାରେ କାର୍ଯ୍ୟ ଆରମ୍ଭ କରି କ୍ରମାନ୍ୱୟରେ ଜାମସେଦପୁର, ଚାଇଁବସା, ସମ୍ବଲପୁର, ରାୟପୁର, ମେଦିନୀପୁର, ଗୋପାଳପୁର, ୱାଲଟିଆର, କାକିନାଡ଼ା ଓ ଶେଷରେ କଟକ ପରିଦର୍ଶନ କରି ୪୧୦ବ୍ୟକ୍ତିଙ୍କଠାରୁ ଗ୍ରହଣକରି ତାହାଙ୍କର ଅନୁସନ୍ଧାନ ୧୮.୧.୧୯୩୨ରେ ସମାପ୍ତ କରିଥିଲେ ।

ଏହି ଅନୁସନ୍ଧାନରେ ଭାଗନେଇଥିବା ଭୁବନାନନ୍ଦ ଦାସ ପାର୍ଲାମେଣ୍ଟ ସଦସ୍ୟ ୩୦.୧୨.୧୯୩୧ରେ ନବୀନ ପତ୍ରିକାରେ ପ୍ରକାଶିତ ସ୍ୱତନ୍ତ୍ର ନିବନ୍ଧରେ ଦର୍ଶାଇଛନ୍ତି ଯେ, 'ସୀମା କମିଶନର ଅନୁସନ୍ଧାନ ବେଳେ ଓଡ଼ିଆଙ୍କର ବିପକ୍ଷରେ ପଡ଼ୋଶୀପ୍ରଦେଶର ନେତୃବର୍ଗ ଉଗ୍ର ମାଟିଆ ସାମ୍ରାଜ୍ୟବାଦ ପ୍ରଦର୍ଶନ କରିଥିଲେ । ଏପରିକି ବିହାର କଂଗ୍ରେସର ନିଷେଧାତ୍ମକ ଆଦେଶପରେ ପଣ୍ଡିତ ନୀଳକଣ୍ଠ ଦାସ ୧୦.୧.୧୯୩୨ରେ ରାଞ୍ଚିଠାରେ ଓଡ଼େନାଲ କମିଟି ସମ୍ମୁଖରେ ତାହାଙ୍କର ସାକ୍ଷ୍ୟ ପ୍ରଦାନ କରିପାରି ନଥିଲେ ।'

ଏପରିକି ମହାତ୍ମାଗାନ୍ଧୀଙ୍କର ଅକୁଣ୍ଠ ସମର୍ଥନ ସତ୍ତ୍ୱେ ୧୯୨୮ଡିସେମ୍ବରରେ ଅନୁଷ୍ଠିତ କଲିକତା କଂଗ୍ରେସରେ ସିନ୍ଧ୍ ଓ କର୍ଣ୍ଣାଟକପ୍ରଦେଶ ଗଠନକୁ ସମର୍ଥନ ଦିଆଯାଇଥିଲେ ମଧ୍ୟ ଓଡ଼ିଶା ପ୍ରଦେଶ ଗଠନ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରାଯାଇଥିଲା । ଏଣୁ ସମଗ୍ର ଭାରତୀୟ ନେତୃବର୍ଗଙ୍କର ତୀବ୍ର ବିରୋଧ ଯୋଗୁଁ, ଓଡ଼ିଆମାନଙ୍କୁ ଓଡ଼ିଶାପ୍ରଦେଶ ଗଠନଲାଗି ନିଜର ଶିଙ୍ଗରେ ନିଜେ ମାଟି ଖୋଳିବାକୁ ପଡ଼ିଥିଲା ।





ଭୁବନାନନ୍ଦ ଦାସ ତାହାଙ୍କର ନିବନ୍ଧରେ ଉଲ୍ଲେଖ କରିଛନ୍ତି ଯେ ମାଡ୍ରାସ ପ୍ରଦେଶର ନେତୃବର୍ଗ ଏହି ପରିଦର୍ଶନ ବେଳେ ଦାବୀ କରିଥିଲେ ଯେ, 'ଆମେ ଓଡ଼ିଶାପ୍ରଦେଶ ଗଠନକୁ ବିରୋଧ କରୁ, ଏହାକୁ ପ୍ରତ୍ୟାଖ୍ୟାନ କରାଯାଉ ।' ପୁଣି ସେମାନେ ସୂଚାଇଥିଲେ ଯେ, 'ଗଞ୍ଜାମ ଜିଲ୍ଲା ଓ ଜୟପୁର ଜମିଦାରୀ ନିଅଣ୍ଡିଆ ଅଞ୍ଚଳଥିବାରୁ ତାହାକୁ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶ ସହିତ ସଂଯୁକ୍ତ କରାନଯାଉ ।' ଉପସଂହାରରେ ଭୁବନାନନ୍ଦ ଦାସ ଲେଖିଥିଲେ 'ମେଦିନପୁରର ବୀରେନ ସାସମଲମାନେ, ମାଡ୍ରାସ ପ୍ରଦେଶର ନରସିଂହ ରାଜୁମାନେ ଓ ବିହାର ପ୍ରଦେଶର ପ୍ରସାଦମାନେ ଏକ ପକ୍ଷରେ ବ୍ରିଟିଶ ପ୍ରଶାସନର ଶ୍ୱେତ ସାମ୍ରାଜ୍ୟବାଦ ବିରୁଦ୍ଧରେ ଉଗ୍ର ସଂଗ୍ରାମ ସଞ୍ଚାଳିତ କରୁଥିବାବେଳେ, ସେମାନେ ବିଚ୍ଛିନ୍ନ ଓଡ଼ିଆଭାଷୀ ଅଞ୍ଚଳପ୍ରତି ମାଟିଆ ସାମ୍ରାଜ୍ୟବାଦର ଉଗ୍ର ଶୋଷଣ ପ୍ରକ୍ରିୟାକୁ ଜାରିରଖି ଦାସତ୍ୱ ବନ୍ଧନରେ ଆବଦ୍ଧ କରିଛନ୍ତି ।'ସୀମା ନିର୍ଦ୍ଧାରଣକମିଟି, ତାହାଙ୍କର ପରିଦର୍ଶନରେ ଶେଷପର୍ଯ୍ୟାୟରେ ୧୯୩୨ ସାଲର ପ୍ରଥମ ସପ୍ତାହରେ କଟକରେ ଅବସ୍ଥାନ କରି, ମଧୁସୂଦନ ଦାସ ପ୍ରମୁଖ ଓଡ଼ିଆ ଜାତୀୟବାଦୀ ନେତୃବର୍ଗଙ୍କଠାରୁ ସାକ୍ଷ୍ୟଗ୍ରହଣ କରିଥିଲେ ଏବଂ ବିଦାୟର ଶେଷବେଳରେ ମଧୁସୂଦନ ଦାସ ଓଡ଼େନାଲ କମିଟିକୁ ନିଜର ବାସଭବନରେ ଏକ ଭବ୍ୟ ଉଦ୍ୟାନ ମିଳନୀରେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଥିଲେ । ଓଡ଼େନାଲ କମିଟି ରିପୋର୍ଟ ୧୯୩୨ସାଲର ଜୁନ୍ ପ୍ରଥମ ସପ୍ତାହରେ ପ୍ରକାଶପାଇଲା, ଯହିଁରେ ଖଡ଼ିଆଳ ଜମିଦାରୀ, ଗଞ୍ଜାମର ପାରଳାଖେମୁଣ୍ଡି ସମେତ ବହୁ ଅଞ୍ଚଳ ବାଦ୍‌ଦେଇ ଜୟପୁର ଜମିଦାରୀ ସଂଯୁକ୍ତ ରହିଥିଲା । ପରିଣାମରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଆୟତନ ୩୩,୦୦୦ବର୍ଗ ମାଇଲ ଆଉ ଜନସଂଖ୍ୟା ୮୨,୦୦,୦୦୦ରେ ସ୍ଥିରୀକୃତ ହୋଇଥିଲା । ଏଥିରେ ସିଂହଭୂମି, ମଞ୍ଜୁଷା, ଟିକାଲୀ ଆଦି ବହୁ ଅଞ୍ଚଳ ବାଦ୍ ପଡ଼ିଥିଲା । ଭୁବନାନନ୍ଦ ଦାସ ଇଂଲଣ୍ଡର ଗ୍ଲାସଗୋଠାରେ ଇଞ୍ଜିନିୟରିଂ ଅଧ୍ୟୟନ କରିବା ସହିତ ଇଂଲଣ୍ଡର ବିଭିନ୍ନ ଅଞ୍ଚଳ ସହିତ ପରିଚିତ ଥିଲେ ।

ଏଣୁ ତୃତୀୟ ଗୋଲଟେବୁଲ ବୈଠକରେ ଖଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜଙ୍କର ସହ ଭୁବବାନନ୍ଦ ଦାସ ୭.୧୨.୧୯୩୨ରେ ସାକ୍ଷ୍ୟପ୍ରଦାନ କରିଥିଲେ । ପରିଣାମରେ ୨୪.୧୨.୧୯୩୨ରେ ଗୋଲଟେବୁଲ ବୈଠକର ଶେଷଦିବସରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଉଦ୍‌ଘୋଷିତ ହୋଇଥିଲା । ମାତ୍ର ଓଡ଼ିଶାପ୍ରଦେଶର ଗଠନର ଶେଷପର୍ଯ୍ୟାୟଟି ଅତ୍ୟନ୍ତ ସଂଘର୍ଷପୂର୍ଣ୍ଣ ଓ ଦୁଃଖଦ ଥିଲା । ଓଡ଼ିଆ ନେତୃବର୍ଗଙ୍କ ସହିତ ଆନ୍ଧ୍ର ନେତୃବର୍ଗ ତିନିଗୋଟି ଗୋଲଟେବୁଲ ବୈଠକରେ ଯୋଗଦାନ କରି ସ୍ୱତନ୍ତ୍ର ଆନ୍ଧ୍ରପ୍ରଦେଶ ଗଠନର ଦାବୀ ଉଠାଇଥିଲେ । ଏହାର ପରେ ୧୮.୩.୩୩ରେ ବ୍ରିଟିଶ ସରକାରଙ୍କ ପକ୍ଷରୁ ଯେଉଁ ଶ୍ୱେତପତ୍ର ପ୍ରକାଶ ପାଇଲା, ସେଥିରେ ସମ୍ଭାବ୍ୟ ଓଡ଼ିଶାପ୍ରଦେଶରୁ ଜୟପୁର ଜମିଦାରୀ ଓ ପାରଳାଖେମୁଣ୍ଡି ଜମିଦାରୀ ବାଦ ଦିଆଯାଇଥିଲା ଏବଂ ଓଡ଼ିଶା ପ୍ରଦେଶର ଆୟତନ ୩୩,୦୦୦ବର୍ଗମାଇଲରୁ ହ୍ରାସ ପାଇ ମାତ୍ର ୨୧,୫୪୫ବର୍ଗ ମାଇଲରେ ସୀମିତ ରହିଲା । ଅନ୍ୟାର୍ଥରେ ଏକ ତୃତୀୟାଂଶ ସମୃଦ୍ଧ ଅଂଶ ବାଦ୍ ପଡ଼ିଗଲା, ଯାହା ଅତ୍ୟନ୍ତ ନୈରାଶ୍ୟପୂର୍ଣ୍ଣ ଓ ମର୍ମନ୍ତୁଦ ଥିଲା । ଏହି ବିଷାଦାଛନ୍ନ ଓ ଶୋକଗ୍ରସ୍ତ ମୁହୂର୍ତ୍ତରେ ଜାତିର ଅନନ୍ୟ ସାରଥି ମଧୁସୂଦନ, ପାରଳା ମହାରାଜାଙ୍କୁ ଆହ୍ୱାନ କରି ତାହାଙ୍କ ଅଧିନାୟକତ୍ୱରେ ଏକ ଓଡ଼ିଆ ପ୍ରତିନିଧିତ୍ୱ ଦଳ ଯାଇ ଜଏଣ୍ଟ ପାର୍ଲାମେଣ୍ଟ କମିଟି ସପକ୍ଷରେ ସାକ୍ଷ୍ୟ ପ୍ରଦାନ ପାଇଁ ଅନୁରୋଧ କରିଥିଲେ । ଏହାର ପରିଣାମରେ



୭.୪.୧୯୩୩ରେ ପାରଳା ମହାରାଜାଙ୍କ ନେତୃତ୍ୱରେ ଖଲ୍ଲିକୋଟ ରାଜା, ଭୁବନାନନ୍ଦ ଦାସ, ଲିଙ୍ଗରାଜ ପାଣିଗ୍ରାହୀ ପ୍ରମୁଖ ଲଣ୍ଡନ ଯାତ୍ରା କରି ୩.୭.୧୯୩୩ରେ ଜଏଣ୍ଟ ପାର୍ଲାମେଣ୍ଟାରୀ କମିଟି ଆଗରେ ସାକ୍ଷ୍ୟ ପ୍ରଦାନ କରିଥିଲେ । ଏହାପରେ ୧୦.୭.୩୩ରେ ଆନ୍ଧ୍ର ପ୍ରତିନିଧି ଦଳ ମଧ୍ୟ ସାକ୍ଷ୍ୟପ୍ରଦାନ କରିଥିଲେ । ଏହି ପର୍ଯ୍ୟାୟ ପରେ ଏହି କମିଟି, ଓଡ଼େନାଲଙ୍କଠାରୁ ୭.୧୧.୧୯୩୩ରେ ତାହାଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ ବକ୍ତବ୍ୟକୁ ଅନୁଶୀଳନ କରିଥିଲେ । ପାରଳା ମହାରାଜା ୧୨.୦୮.୩୩ରେ ଓଡ଼ିଶା ଫେରିଥିଲେ ମଧ୍ୟ ତାହାଙ୍କର ଦାବୀ ଉପସ୍ଥାପନା ପାଇଁ ପୁନରାୟ ୨୨.୫.୧୯୩୪ରେ ଲଣ୍ଡନ ଯାଇ ଦୀର୍ଘ ଛଅ ମାସ ଅବସ୍ଥାନ କରି ୮.୧୧.୧୯୩୪ରେ ଓଡ଼ିଶା ଫେରିଥିଲେ । ସେହି ଗୁରୁତ୍ୱପୂର୍ଣ୍ଣ ବେଳାରେ ମାନ୍ଦ୍ରାସ ସରକାର ତଥା ଭାରତର ବଡ଼ଲାଟଙ୍କର ପ୍ରବଳ ପ୍ରତିରୋଧ ସତ୍ତ୍ୱେ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନର ତାତ୍ପର୍ଯ୍ୟପୂର୍ଣ୍ଣ ଅନ୍ତିମ ପର୍ଯ୍ୟାୟରେ ଇଂଲଣ୍ଡରେ ମଧୁସୂଦନଙ୍କର ଇଂରାଜୀ ସୁହୃଦବର୍ଗ, ତଥା ବିହାର ବିଧାନସଭାରେ ମଧୁସୂଦନଙ୍କର ଅନ୍ତରଙ୍ଗ ବନ୍ଧୁ ସଚ୍ଚିଦାନନ୍ଦ ସିହ୍ନା ପ୍ରମୁଖ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସ୍ଥାପନା ଲାଗି ଅନୁକୂଳ ପ୍ରସ୍ତାବ ଗ୍ରହଣ କରି ଶ୍ୱେତ ଓ ମାଟିଆ ସାମ୍ରାଜ୍ୟବାଦର ବିଭେଦ ଭୁଲି ଅଯାଚିତ ସାହାଯ୍ୟ ପ୍ରଦାନ କରିଥିଲେ । ଅବଶେଷରେ ୨୨.୧୧.୧୯୩୪ରେ ପ୍ରକାଶିତ ଜଏଣ୍ଟ ପାର୍ଲାମେଣ୍ଟାରୀ କମିଟିର ସବିଶେଷ ସିଦ୍ଧାନ୍ତ ଅନୁସାରେ ଜୟପୁର ଜମିଦାରୀ ଓ ପାରଳା ଜମିଦାରୀ ଏକ ତୃତୀୟାଂଶ ଓଡ଼ିଶା ପ୍ରଦେଶ ସହିତ ସଂଯୁକ୍ତ ହେବାପରେ, ଶ୍ୱେତ ପତ୍ରରେ ଉଲ୍ଲିଖିତ ଆୟତନ ତୁଳନାରେ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶର ଆୟତନ ଅର୍ଦ୍ଧାଧିକ ବୃଦ୍ଧି ପାଇଥିଲା । ଅବଶେଷରେ ଓଡ଼ିଶା ପ୍ରଦେଶ ଆୟତନ ୩୨,୬୯୫ ବର୍ଗମାଇଲକୁ ବୃଦ୍ଧି ପାଇଥିଲା ଆଉ ଓଡ଼ିଶାର ଜନସଂଖ୍ୟା ପ୍ରାୟ ୮୦ଲକ୍ଷ ଥିଲା । ଏହା ଥିଲା ସମଗ୍ର ଓଡ଼ିଶା ଇତିହାସର ସବୁଠାରୁ ଗୌରବୋଜ୍ଜ୍ୱଳ ଅଧ୍ୟାୟ । ପାରଳା ମହାରାଜ ୧୨.୦୮.୧୯୩୩ରେ ଇଂଲଣ୍ଡରୁ ଫେରି ସିଂହଭୂମିର ନେତୃପୁରୁଷ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କୁ ଲେଖିଥିଲେ 'ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଶ୍ରେୟ, ରିସଲେ ସାକୁର୍ଲାର, ଯାହା ମଧୁସୂଦନଙ୍କର ପ୍ରଚେଷ୍ଟାରେ କର୍ଜନଙ୍କର ଦ୍ୱାରା ପ୍ରଚାରିତ ହୋଇଥିଲା ତାହାକୁ ପ୍ରାପ୍ୟ । ଏହାହିଁ ଅବଶେଷରେ ନିର୍ଣ୍ଣାୟକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲା ।'

ପ୍ରକୃତରେ ୧୯୦୦ସାଲର ଶୀର୍ଣ୍ଣ ଓଡ଼ିଶା ଡିଭିଜନ ତୁଳନାରେ ୧୬.୧୦.୧୯୦୫ରେ ଆଉ ୧.୪. ୧୯୩୬ରେ ଯେଉଁ ସବୁ ଅଞ୍ଚଳ ଓଡ଼ିଶା ସହିତ ସଂଯୁକ୍ତ ହୋଇଥିଲା, ତାହା ଏହି ପ୍ରଦେଶକୁ ଆକଳନ ପ୍ରାକୃତିକ ବିଭବ ଆଉ ଅମାପ, ଜଳ, ଅରଣ୍ୟ ଆଉ ଖଣିଜ ସମ୍ପଦରେ ଭରିଦେଇ ଓଡ଼ିଶାକୁ ସମୃଦ୍ଧଶାଳୀ ଆଉ ପ୍ରଥମ ଭାଷାଭିତ୍ତିକ ପ୍ରଦେଶରେ ପରିଣତ କରିଛି । ମାତ୍ର ଓଡ଼ିଆ ଜାତିର ଏହି ସ୍ୱର୍ଣ୍ଣିମ ଅଧ୍ୟାୟ ଆଜି ରହିଯାଇଛି, ବିସ୍ମୃତ ଆଉ ଏହାର ଅକୁତୋଭୟ ସଂଗ୍ରାମୀ ନେତୃବର୍ଗ ରହିଯାଇଛନ୍ତି ଅଜ୍ଞାତ ଆଉ ଅପାଂକ୍ତେୟ । ଏହାହିଁ ଏହି ଜାତିର ଚରମ ଦୁର୍ଦ୍ଦଶା ଓ ଅଭିସଂପାତ ।

('ସମଦୃଷ୍ଟି'-୧୬-୩୧ ମାର୍ଚ୍ଚ-୨୦୦୮)








ଓଡ଼ିଶାର ପ୍ରାକୃତିକ ବିଭବର ସୌନ୍ଦର୍ଯ୍ୟ ପସରା, ନୈସର୍ଗିକ ଶୋଭାରାଶିର ଅକଳନ ମାଧୁରିମାର ଗାରିମା ଏବଂ ବ୍ୟଗ୍ର ଉତ୍କଣ୍ଠା ଆଉ ଉଚ୍ଚାଟର ଅନୁପମ ରୋମାଞ୍ଚକର ଦୃଶ୍ୟ ସମ୍ଭାର ଘେନି ବଣାଇର ଖଣ୍ଡାଧାର, ଓଡ଼ିଶାର ସର୍ବୋଚ୍ଚ ଉଚ୍ଚତା ବିଶିଷ୍ଟ ଜଳପ୍ରପାତରୂପେ ମାନ୍ୟତାପ୍ରାପ୍ତ ହୋଇଛି । ବଣାଇର ପ୍ରାୟ ୩୦୦୦ଫୁଟ୍ ଉଚ୍ଚର ରୋହ୍ମା ମାଳଭୂମିର ଛେଳିଆକୋଟା ପର୍ବତ ଶିଖରୀର ଦକ୍ଷିଣ ଭାଗରେ କୋରେଇପାଣି ନାଳର ଗିରି ନିର୍ଝର ପ୍ରାୟ ୮୦୦ଫୁଟ ଉଚ୍ଚତାରୁ ଶିବଙ୍କର ଜଟାଜୁଟରୁ ଗଙ୍ଗା ନିର୍ଗତ ହେଲାପରି ସମସ୍ତ ପର୍ବତକୁ ଆଚରିତ କରି, ଇନ୍ଦ୍ରଧନୁର ଅପୂର୍ବ ଦ୍ୟୁତିକୁ ଗୁମ୍ଫିତ କରି ଝରିପଡ଼ିଛି ନିମ୍ନଦେଶକୁ । ଦିବାଲୋକରେ ଏହି ଜଳପ୍ରପାତ ଖଣ୍ଡାର ଧାର ଭଳି ଶାଣିତ ତୀବ୍ରତାର ପ୍ରଖର ଔଜ୍ଜ୍ୱଲ୍ୟ ଘେନି ବହୁ କିଲୋମିଟର ଦୂରରୁ ଯେପରି ଜନମାନସକୁ ହାତ ଠାରି ମୁହୂର୍ମୁହୁ ନିମନ୍ତ୍ରଣ କରୁଥାଏ ଆଉ କୌମୁଦୀ ସ୍ନାତ ପୂର୍ଣ୍ଣିମା ରଜନୀରେ ଏହାର ଐନ୍ଦ୍ରଜାଳିକ ଆକର୍ଷଣର ଉଲ୍ଲାସ ସ୍ୱର୍ଗର ସୁଷମାରାଶିକୁ ଯେପରି ଭୂଲୁଣ୍ଠିତ କରିଥାଏ । ଏହାର ଶୋଭା, କବି ଗଙ୍ଗାଧରଙ୍କ ବର୍ଣ୍ଣନାର ଶୈଳୀର ଉପମାରେ ଏହିପରି-

'ସମୁଚ୍ଚ ଶିଖରୁ ଲମ୍ଫ ଦେଇ ବାରମ୍ବାର,
ସୁରମ୍ୟ ବିପିନ କୋଳେ ହୁଏ ପ୍ରପତିତ,
ସଦାଶିବ ଶିରଭ ଯେହ୍ନେ ଜାହ୍ନବୀର ଧାର ।'

ପାଶ୍ଚାତ୍ୟ ଜଗତରୁ ଆସିଥିବା ବହୁ ଅନୁଭବୀ ପର୍ଯ୍ୟଟକ, ଖଣ୍ଡାଧାରକୁ ଓଡ଼ିଶାର ସର୍ବଶ୍ରେଷ୍ଠ ଉଦ୍ଧାମ , ରୋମାଞ୍ଚକର ସାହସିକ ପର୍ଯ୍ୟଟନ କେନ୍ଦ୍ର ରୂପେ ଚିହ୍ନିତ କରିଛନ୍ତି । ଇଂରେଜ ଗେଜେଟିଆର ସଂକଳକ କୋବେଡ଼ିନ୍ ରସେଲ୍‌ଙ୍କର ଭାଷାରେ 'ନିଘଞ୍ଚ ଅରଣ୍ୟାନୀ ଆଚ୍ଛାଦିତ ପର୍ବତ ଶ୍ରେଣୀ ହଠାତ ଦୁରନ୍ତ ସ୍ୱସ୍ତିର ନିଶ୍ୱାସ ମାରେ, ଯେତେବେଳେ ଖଣ୍ଡାଧାର ଜଳପ୍ରପାତ ସୁଉଚ୍ଚ ଶିଖରୀରୁ ଖସିପଡ଼ି ପ୍ରଖର ସୂର୍ଯ୍ୟାଲୋକର ଆବେଶରେ ଜାଜ୍ୱଲ୍ୟମାନ ପ୍ରକାଶମୟ ଦୀପ୍ତିରେ ନିମ୍ନକୁ ନିର୍ଗତ ହୁଏ ।

ଏହି ସ୍ୱଚ୍ଛ ଜଳଧାରା ବର୍ଷସାରା ଅବିରାମ ଗତିରେ, ତୃଣାଚ୍ଛାଦିତ କୂଳ ଆଉ ପ୍ରସ୍ତର ରାଶି ଦ୍ୱାରା ବାରମ୍ବାର ବିକ୍ଷୋଭିତ ହୋଇ ବହିଚାଲେ, ଆଉ ଜଳର ଉଚ୍ଛ୍ୱାସ ମଧ୍ୟରୁ ଲମ୍ଫ ଦେଉଥିବା ମୀନ ରାଶିକୁ ମାଛରଙ୍କା ଆଉ ଅକଳ୍ପନୀୟ ରଙ୍ଗର ଉଉରଳ ଆଭାସରେ ବିଭୂଷିତ ହୋଇଥିବା ଅସଂଖ୍ୟ ପକ୍ଷୀକୁଳର କୌଶଳପୂର୍ଣ୍ଣ ଚାତୁରୀର ଶିକାର, ସମଗ୍ର-ବନଭୂମିକୁ ରୋମାଞ୍ଚକର ଆକର୍ଷଣରେ ଭରିଦିଏ । ଏହି ଜଳପ୍ରପାତ ନିମ୍ନଭୂମିରେ ଏହାର ଜଳ ସମ୍ଭାରକୁ ସମ୍ପ୍ରସାରିତ କରି ସଞ୍ଚରିଯାଏ ଆଉ କୂପ ଓ ଜଳାଶୟମାନଙ୍କୁ ସାରାବର୍ଷ ଧରି ସଞ୍ଜୀବିତ କରିବା ସହିତ ସମଗ୍ର ଉପତ୍ୟକାକୁ ସବୁଜିମା ଶସ୍ୟକ୍ଷେତ୍ରର ଆବରଣରେ ଭରିଦିଏ ।'

ଏହି ପ୍ରପାତ, ତାହାର ପଶ୍ଚାତରେ ଅମାପ ଲୌହ ଖଣିଜ ସମ୍ପଦକୁ ରକ୍ଷାକବଚ ରୂପେ ସମ୍ପାଦି ରଖିଛି । ହେ ପାଠକବର୍ଗ । ଆପଣମାନେ ଜାଣନ୍ତିକି, ଯେ ଏହି ଖଣ୍ଡାଧାର ସମେତ ଗାଙ୍ଗପୁର ଓ ବଣାଇର ଅମାପ ଖଣିକୁ ବିଭବଭରା ଭୂମିଭାଗ ବିହାରର ଛୋଟନାଗପୁର ଡିଭିଜନର ଅଚ୍ଛେଦ୍ୟ ଅଙ୍ଗ ରୂପେ ରହିଥିଲା । ମାତ୍ର ପରମ ସୌଭାଗ୍ୟର ବିଷୟ ଯେ, ଜାତୀୟଗୌରବ ମଧୁସୂଦନଙ୍କର ଭାରତର ତତ୍କାଳୀନ ବଡ଼ଲାଟ ଲର୍ଡ଼ କର୍ଜନଙ୍କ ସହିତ ୧୯୦୦ସାଲ୍‌ରୁ ୧୯୦୩ ସାଲ ପର୍ଯ୍ୟନ୍ତ ବହୁବାର ଆଳାପ ଆଲୋଚନା ଓ ଦାବୀ ଉପସ୍ଥାପନା ଫଳରେ ୦୩.୧୨.୧୯୦୩ରେ ସମ୍ପ୍ରସାରିତ ରିସଲେ ସାର୍କୁଲାର୍‌ର କାର୍ଯ୍ୟକାରିତା ମାଧ୍ୟମରେ ବହୁ ଓଡ଼ିଆଭାଷୀ ଅଞ୍ଚଳସହିତ ଖଣିଜ ସମ୍ପଦରେ ବିଭବଶାଳୀ ଏହି ଗାଙ୍ଗପୁର ଓ ବଣାଇ ଗଡ଼ଜାତ ଦ୍ୱୟ ୧୬.୧୦.୧୯୦୫ରେ ଓଡ଼ିଶା ଡିଭିଜନ ସହିତ ମିଶ୍ରିତ ହେଇଥିଲା । ଏଣୁ ଏହି ଅଞ୍ଚଳର ସମସ୍ତ ଖଣିଜ ସମ୍ପତ୍ତି ହେଉଛି ମଧୁସୂଦନଙ୍କର ଓଡ଼ିଶା ପ୍ରତି, ପ୍ରତିଶ୍ରୁତିବଦ୍ଧ ପରମ ବିଶ୍ୱସ୍ତତାର ଦାନ, ଆଉ ମଧୁସୂଦନଙ୍କର ଏ କ୍ଷେତ୍ରରେ ସ୍ପଷ୍ଟ ନିର୍ଦ୍ଦେଶ ଥିଲା ଯେ ଏହି ଖଣିଜ ସମ୍ପଦକୁ, ଏହି ପ୍ରଦେଶର ଆବଶ୍ୟକତା ଅନୁଯାୟୀ ଅତି ସ୍ୱଚ୍ଛ ପରିମାଣ ମାତ୍ର ବିନିଯୋଗ କରି ଏହାକୁ ସୁଦୀର୍ଘ କାଳ ପର୍ଯ୍ୟନ୍ତ ଭବିଷ୍ୟତ ଆବଶ୍ୟକତା ମେଣ୍ଟାଇବା ପାଇଁ ରଖାଯାଏ, ଯାହା ରାଜ୍ୟକୁ ଶକ୍ତି ଓ ସାମର୍ଥ୍ୟ ପ୍ରଦାନ କରି ଚାଲିଥିବ । ଏ ଯୁଗରେ ଆମେରିକା ଆଦି ପାଶ୍ଚାତ୍ୟର ଖଣି ସମୃଦ୍ଧ ଦେଶମାନେ, ସେମାନଙ୍କର ବିଶାଳ ଖଣିଜସମ୍ପଦକୁ ସମ୍ପୂର୍ଣ୍ଣଭାବେ ସୁରକ୍ଷିତ ଆଉ ଗଚ୍ଛିତ କରି ରଖି, ଆମଦାନୀ ମାଧ୍ୟମରେ ସେମାନଙ୍କର ଶିଳ୍ପାୟନର କାର୍ଯ୍ୟକ୍ରମ ସଞ୍ଚାଳିତ କରି ରଖିଛନ୍ତି । ମାତ୍ର ଓଡ଼ିଶାର ବର୍ତ୍ତମାନ ପ୍ରଶାସନ, ମଧୁସୂଦନଙ୍କର ଏହି ପ୍ରତିଶ୍ରୁତିବଦ୍ଧ ବିଶ୍ୱସ୍ତତାର ଆବେଦନକୁ ଉଲ୍ଲଂଘନ କରି ନାମମାତ୍ର ମୂଲ୍ୟର ସମସ୍ତ ଖଣିଜ ସମ୍ପଦକୁ ସ୍ୱଳ୍ପକାଳୀନ ସମୟସୀମା ମଧ୍ୟରେ ସମାପ୍ତ କରିଦେବାର ଅନ୍ୟ ଅଦମ୍ୟ ପ୍ରୟାସରେ ବ୍ୟାପୃତ କରିଛନ୍ତି । ଏହି ପ୍ରଶାସନର ଏହି ପ୍ରଦେଶର ସୃଷ୍ଟି ବା ସ୍ଥାପନାକ୍ଷେତ୍ରରେ ସାମାନ୍ୟ ମାତ୍ର ଭୂମିକା ନ ଥିଲାବେଳେ, ମାତ୍ର ପାଞ୍ଚବର୍ଷର ଶାସନ କାଳରେ





ଏହି ସମସ୍ତ ଖଣିଜସମ୍ପଦକୁ ବିନର୍ବ୍ୟୟ କରିଦେବାର ଅଧିକାର କେଉଁଠୁ ପାଇଲେ ?

ଅତ୍ୟନ୍ତ ଦୁର୍ଭାଗ୍ୟ ଆଉ ଚରମ କ୍ଳେଶଦାୟକ ବିଷୟ ହେଉଛି ଯେ, ଖଣ୍ଡାଧାର ଜଳପ୍ରପାତ ସଂଲଗ୍ନ ବିପୁଳ ଲୌହ ଖଣିର ଗନ୍ତାଘର ଆଜି ବହିରାଗତ ଶିଳ୍ପସଂସ୍ଥାର କବଳକୁ ଚାଲିଯାଉଛି । ଆଉ ଆଜିର ବଜାର ଦରରେ ଲୁହାପଥର କଞ୍ଚାମାଲର ଦର ଟନ୍‌ପିଛା ତିନିହଜାର ଟଙ୍କା ଥିଲାବେଳେ, ମାତ୍ର ଟନ୍‌ପିଛା ୨୪ଟଙ୍କା ଦରରେ ଏହି ସାମଗ୍ରୀ ବହିରାଗତ ବିଦେଶୀୟ ଶିଳ୍ପସଂସ୍ଥାକୁ ଯୋଗାଇ ଦିଆଯିବ ।

ରାଉରକେଲାଠାରୁ ମାତ୍ର ନବେ କିଲୋମିଟର ଦୂରରେ ଅବସ୍ଥିତ ଖଣ୍ଡାଧାର ସନ୍ନିକଟ ଅଞ୍ଚଳର ଖଣିଜ ଦ୍ରବ୍ୟ ଉତ୍ତୋଳନ କାର୍ଯ୍ୟକ୍ରମ ଆରମ୍ଭ ହେଲେ, ଯେଉଁ ଦୂଷିତ ପ୍ରକ୍ରିୟାର ଆବର୍ତ୍ତନ ସୃଷ୍ଟି ହେବ, ଏହା ଫଳରେ କେବଳ ଖଣ୍ଡାଧାର ଜଳପ୍ରପାତ ନୁହେଁ, ଖଣ୍ଡାଧାର ପର୍ବତମାଳାରୁ ଉତ୍ପତ୍ତି ହେଉଥିବା ଗଣ୍ଡକା, ଦେବଜଳ, କଳାପାନି, ତାଲ, ସମିଜ ଆଉ କୁରାଡ଼ୀ ଆଦି ଝରଣାମାନ ଅଚିରେ ଶୁଷ୍କ ହୋଇଯିବା ଆଉ ଏଠାରେ ବାସ କରୁଥିବା ବହୁ ବିରଳଜାତିର ପଶୁପକ୍ଷୀ ଓ ସରୀସୃପମାନେ ଚିରକାଳ ଲାଗି ବିଲୁପ୍ତ ହୋଇଯିବେ ।

ସବୁଠାରୁ ବଡ଼ ଦୁର୍ବିପାକ ଆଉ ଦୁର୍ଗତିର ବିଷୟ ହେଲା ଏହି ଅଞ୍ଚଳରେ ବାସ କରୁଥିବା ଆଦିମ ଭୂୟାଁ ଜନଜାତି ଆଉ ଅନ୍ୟ ଆଦିବାସୀ ସମ୍ପ୍ରଦାୟମାନେ ଯେଉଁମାନେ ଏହାକୁ କଣ୍ଟାଦେବୀ ପୀଠର ମାନ୍ୟତା ପ୍ରଦାନ କରି ଆରାଧନା କରନ୍ତି, ସେମାନେ ଖଣି ଉତ୍ତୋଳନର ବିଷାକ୍ତ ପ୍ରକ୍ରିୟା ମଧ୍ୟରେ ବାସହୀନ ଚାଷହୀନ ହୋଇ ଅସୀମ ନିର୍ଯାତନାର ସମ୍ମୁଖୀନ ହେବେ । ଏହାର ପ୍ରଭାବର ଆକୁଳ ଯନ୍ତ୍ରଣାର ସମସ୍ତ ପରିବେଶ ବିଧୁରିତ ହେବାବେଳେ, ବହିରାଗତ ଶିଳ୍ପପତିମାନେ ସେଜ (SEZ) ପ୍ରକ୍ରିୟାର ମାଧ୍ୟମରେ ସମଗ୍ର ବିକସ ବ୍ୟବସ୍ଥାର ରିହାତି ପାଇଁ ସେମାନଙ୍କର ସମୃଦ୍ଧିର ସାମ୍ରାଜ୍ୟକୁ ବିସ୍ତାରିତ କରି ଚାଲିଥିବେ ।

ଅନୁପମ ଦୃଶ୍ୟରାଜି ବିମଣ୍ଡିତ ଆଉ ପରମ ଉଚ୍ଚାଟ ଓ ଉନ୍ମାଦର ପ୍ରତୀକ ଖଣ୍ଡାଧାର ଜଳପ୍ରପାତ ତାହାର ଉଚ୍ଚତା ଆଉ ପ୍ରକୃତିର କମନୀୟତାର ନୈପୁଣ୍ୟ ଆଉ ମାଦକତା ଦୃଷ୍ଟିରୁ ଏହି ରାଜ୍ୟର ନୈସର୍ଗିକ କୋଣାର୍କ ରୂପେ ତିଷ୍ଠିରହିଛି । ହୁଏତ ଅନବଦ୍ୟ କଳା ଭାସ୍କର୍ଯ୍ୟ ବିମଣ୍ଡିତ କୋଣାର୍କର ସ୍ଥାପତ୍ୟ ଆଉ ମାତ୍ର ପାଞ୍ଚଶହ ବର୍ଷପରେ ଭୂଲୁଣ୍ଠିତ ହୋଇ ଯାଇଥିବ, ମାତ୍ର ଖଣ୍ଡାଧାରର ନୈସର୍ଗିକ କୋଣାର୍କ ଅନନ୍ତକାଳ ପର୍ଯ୍ୟନ୍ତ ତିଷ୍ଠି ରହି ସୌନ୍ଦର୍ଯ୍ୟର ସୌରଭ ବିତରିତ କରି ଚାଲିଥିବ, ଯଦି ଏହାର ଯଥାଯଥ ସୁରକ୍ଷା ପ୍ରଦାନ କରାଯାଏ । ମାତ୍ର ଏହି ଜଳପ୍ରପାତ ଅତ୍ୟନ୍ତ ସ୍ପର୍ଶକାତର ଆଉ ଏହାର ଜଳଧାରଣର ଶକ୍ତି ସୀମିତ ଥିବାରୁ, ସାମାନ୍ୟତମ, ଅବହେଳା ଓ ଅଯତ୍ନରେ ଏହାର ବିଲୁପ୍ତ ହେବାର ଆଶଙ୍କା ରହିଛି, ଯେପରି ତ୍ରୁଟିପୂର୍ଣ୍ଣ ନିର୍ଦ୍ଧାରଣ ଯୋଗୁଁ ରାୟଗଡ଼ାର ନାଗାବଳୀ ଉପରେ ଥିବା ହାତୀପଥର ଜଳପ୍ରପାତ ସମୂଳେ ବିଲୁପ୍ତ ହୋଇଗଲା ।

ଆଜି ରାଜ୍ୟର ଅଭିସନ୍ଧିମୂଳକ ନେତୃବର୍ଗଙ୍କର ଅବମୂଲ୍ୟାୟନରେ ସୁଦୃଶ୍ୟ ଖଣ୍ଡାଧାର ପ୍ରପୀଡ଼ିତ ଆଉ ବିଧୁରିତ । *ହେ ପାଠକବର୍ଗ; ଆପଣ ଜାଣନ୍ତି ତ ଆଜିଠାରୁ ଏକ ଶତାବ୍ଦୀ ପୂର୍ବେ ଓଡ଼ିଶା ଜାତିର କବିକୁଳ ତିଳକ ରାଧାନାଥ, ବଣାଇର ଖଣ୍ଡାଧାରକୁ ଉତ୍କଳ ଜନନୀଙ୍କର କାର୍ତ୍ତି କିରୀଟିନୀ ରୂପେ*



*ଚିହ୍ନିତ କରି ଦେଶର ପ୍ରମୁଖ ପର୍ଯ୍ୟଟନକେନ୍ଦ୍ରର ମାନ୍ୟତା ପ୍ରଦାନ କରିଥିଲେ ।* (ରାଧାନାଥ ଗ୍ରନ୍ଥାବଳୀ ଦ୍ରଷ୍ଟବ୍ୟ)

କବିବର ରାଧାନାଥଙ୍କ ରଚନାରେ ଖଣ୍ଡାଧାରର ଉପମା ଏହି ପର୍ଯ୍ୟାୟର -

'ନୀର ଆସ୍ତରଣୁ ଭୃଗୁ ପ୍ରସ୍ତେଯାର,
ହୀରକକୁ ଦିଏ ସହସ୍ର ଧିକାର ।
ନିରନ୍ତର ରତ୍ନ ସୀମନ୍ତ ପରାଏ,
ଇନ୍ଦ୍ରଧନୁ ଯାର ଶିରେ ଶୋଭାପାଏ ।
ଯହିଁ କେଳିଲୋଲ୍ଲ ଜଳଦେବୀ କେଳି,
ଉପୁଯାଏ ଶତ ସଲିଳ ହାବେଳି ।'

ସେ ଯୁଗରେ ମଧୁସୂଦନଙ୍କର ସେହି ଜାତୀୟତାର ମନ୍ତ୍ରରେ ଅଭିମନ୍ତ୍ରିତ କବିକୁଳ ଓ ବୁଦ୍ଧିଜୀବୀଗଣ ପ୍ରଦେଶର ପ୍ରତି ବିଭାମୟୀ ଭୂଖଣ୍ଡକୁ ଓଡ଼ିଶା ଜନନୀଙ୍କର ପୂଣ୍ୟା ପ୍ରତିରୂପେ ଚିହ୍ନିତ କରି, ସେହି ଭୂଖଣ୍ଡ ଉପରେ କାବ୍ୟ ରଚନା ମାଧ୍ୟମରେ ଓଡ଼ିଶା ଜନନୀଙ୍କ ବନ୍ଦନାରେ ଦେଶକୁ ମୁଖରିତ କରିଥିଲେ । ଆଜି ସେହି ନୈସର୍ଗିକ ଭୂମିଖଣ୍ଡ ଯେତେବେଳେ ବିପର୍ଯ୍ୟସ୍ତ ଆଉ ଭୁଲୁଣ୍ଠିତ, ବିସ୍ଥାପନର ତୀବ୍ର ଜ୍ୱାଳାରେ ରାଜ୍ୟର ବହୁଭାଗ ପ୍ରପୀଡ଼ିତ ଆଉ ସନ୍ତାପିତ ଆଉ ଖଣିଜ ସମ୍ପଦର ଅବଲୁଣ୍ଠନରେ ଦେଶ ସମ୍ପଦବିହୀନ ଆଉ ହୀନବାର୍ଯ୍ୟ ହୋଇପଡୁଛି , ସେତେବେଳେ କବିକୁଳ ଓ ବୁଦ୍ଧିଜୀବୀ ଗୋଷ୍ଠୀଙ୍କ ନିରବତା ଆଉ ନିର୍ବେଦତା ଯଥାର୍ଥରେ ଯନ୍ତ୍ରଣାଦାୟକ ।

ପ୍ରକୃତି କବି ଗଙ୍ଗାଧର ମେହେରଙ୍କର ରୁଚିବନ୍ତ ବର୍ଣ୍ଣନାରେ ଆଜିର ଓଡ଼ିଶାର ଦୟନୀୟ ସ୍ଥିତି-

'ପରଦେଶୁ ଆସି ପରଦେଶ ବାସୀ
ଦେଉଛନ୍ତି ଆମ୍ଭ ଅନ୍ନଜଳ ଗ୍ରାସୀ
ଭକୁଆ ପରାୟେ ଭକ ଭକ ହୋଇ
ଚାହିଁଅଛୁ ତାଙ୍କ ବଦନ' ।( ୧୯୦୩)

('ସମଦୃଷ୍ଟି'-୧୬-୩୧ ଅଗଷ୍ଟ-୨୦୦୮)







# ସହୃଦୟତାର ପରିଧି ମଧ୍ୟରେ ମହାତ୍ମା ଗାନ୍ଧୀ ଓ ଆମ୍ବେଦକର

ଊନବିଂଶ ଶତାବ୍ଦୀର ପ୍ରାରମ୍ଭ କାଳରେ ଦଳିତ ଗୋଷ୍ଠୀ ଓ ମନୁବାଦୀ ଗୋଷ୍ଠୀମାନଙ୍କ ମଧ୍ୟରେ ସଂଘର୍ଷ ଅତ୍ୟନ୍ତ ଉଗ୍ର ଆଉ ତୀବ୍ରରୂପ ନେଇ ବିଦ୍ରୋହର ପରିସୀମା ସ୍ପର୍ଶ କରିଥିଲା ଏବଂ ହିନ୍ଦୁ ସମାଜ ବିଭାଜନର ଦ୍ୱାରଦେଶରେ ପହଞ୍ଚିଥିଲା । ସଂଗ୍ରାମ ହୋଇଥିଲା ରକ୍ତମୁଖୀ ଓ ସ୍ପର୍ଶକାତର । ଏହି ପୃଷ୍ଠଭୂମିରେ ସଦର୍ପେ ଉଭା ହୁଅନ୍ତି ମୁକ୍ତିସଂଗ୍ରାମର ଅନନ୍ୟ ସାରଥୀ ମହାତ୍ମାଗାନ୍ଧୀ ଆଉ ଦଳିତ ଜାତିର ଅପ୍ରତିଦ୍ୱନ୍ଦ୍ୱୀ ନେତା ଭୀମରାଓ ଆମ୍ବେଦକର । ଆମ୍ବେଦକରଙ୍କ ପୂର୍ବରୁ ଊନବିଂଶ ଶତାବ୍ଦୀରେ ଜ୍ୟୋତିରାଓ ଫୁଲେ (୧୮୨୭-୧୮୯୦) ଦଳିତମାନଙ୍କର ପୁନରୁତ୍‌ଥାନ ଦିଗରେ ବଳିଷ୍ଠ ଭିତ୍ତିଭୂମି ପ୍ରତିଷ୍ଠା କରିଥିଲେ ଏବଂ କିଛି ଦଳିତ ସାହିତ୍ୟ ମଧ୍ୟ ରଚନା କରିଥିଲେ । ସେ ମହାରାଷ୍ଟ୍ରରେ ନିଷ୍ପେଷିତ ଅସ୍ପୃଶ୍ୟ 'ମାହାର'ମାନଙ୍କୁ ଦଳିତ ବୋଲି ସର୍ବପ୍ରଥମେ ଆଖ୍ୟାୟିତ କରିଥିଲେ ।

ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ଡ.ଆମ୍ବେଦକର ହିଁ ସମସ୍ତ ଅସ୍ପୃଶ୍ୟ (ଅନୁସୂଚିତ ଜାତି)ଙ୍କ ପାଇଁ ଦଳିତ ଶବ୍ଦଟି ପ୍ରୟୋଗ ଓ ପ୍ରଚଳନ କରି ଏହାକୁ ସର୍ବଜନ-ମାନ୍ୟତା ଓ ସ୍ୱୀକୃତି ପ୍ରଦାନ ସହ ମହା-ଆନ୍ଦୋଳନର ରୂପରେଖ ଦେଲେ ।

ଭାରତରତ୍ନ ଭୀମରାଓ ଆମ୍ବେଦକର (୧୮୯୧-୧୯୫୬) ଦଳିତ ଜାତିର 'ମାହାର' କୁଳରେ ରାଙ୍ଗି ସତପାଲଙ୍କର କନିଷ୍ଠ ପୁତ୍ର ରୂପେ ମହାରାଷ୍ଟ୍ରର ସତାରାଠାରେ ୧୪.୪.୧୮୯୧ରେ ଜନ୍ମଗ୍ରହଣ କରିଥିଲେ । ସେ ଛାତ୍ରଜୀବନର ବିଭିନ୍ନ ପର୍ଯ୍ୟାୟରେ ଉଚ୍ଚବର୍ଗଙ୍କ ଦ୍ୱାରା ଉଗ୍ର ନିର୍ଯାତନାର ଦୟନୀୟ ଶିକାର ହୋଇଥିଲେ, ଯହିଁରେ ତାଙ୍କର ବିଳପିତ ଆତ୍ମା ତୀବ୍ରଭାବରେ ବିଦ୍ରୋହ କରି ଉଠିଥିଲା । ସେ ବରୋଦା ଆଉ କୋହ୍ଲାପୁର ଶାସକଙ୍କଠାରୁ ବୃତ୍ତି ପାଇ ଆମେରିକା, ଇଂଲଣ୍ଡ ଆଉ ୟୁରୋପରେ ଉଚ୍ଚଶିକ୍ଷା ଲାଭକରି ଶିକ୍ଷାବିତ୍ ଏବଂ ଆଇନଜୀବୀ ବୃତ୍ତିରେ ନିୟୋଜିତ ହୋଇଥିଲେ ମଧ୍ୟ ଦଳିତଜାତିର ମୁକ୍ତି ପାଇଁ ହିଁ ନିଜର ଜୀବନକୁ ଉତ୍ସର୍ଗ କରିଥିଲେ । ସେ ପ୍ରଥମ ପର୍ଯ୍ୟାୟରେ ଦଳିତମାନଙ୍କ ପାଇଁ ମନ୍ଦିର ପ୍ରବେଶ ତଥା କୂପ, ଜଳାଶୟମାନଙ୍କରୁ ଜଳ ବ୍ୟବହାର କ୍ଷେତ୍ରରେ ତାଙ୍କର ସଂଗ୍ରାମ ଅବ୍ୟାହତ



ରଖି କ୍ରମଶଃ ଅର୍ଥନୈତିକ, ରାଜନୈତିକ, ସାମାଜିକ କ୍ଷେତ୍ରରେ ଦଳିତମାନଙ୍କର ଅଧିକାର ପ୍ରାପ୍ତି ଲାଗି ନିରବଚ୍ଛିନ୍ନ ଉଦ୍ୟମରେ ବ୍ରତୀ ରହିଥିଲେ ଏବଂ ଉଚ୍ଚବର୍ଗ ଗୋଷ୍ଠୀଙ୍କର ତୀବ୍ର ପ୍ରତିହିଂସାମୂଳକ ବିରୋଧର ସମ୍ମୁଖୀନ ହୋଇଥିଲେ । ସେ ଏହା ସହିତ ଦଳିତମାନଙ୍କୁ ସଂଘବଦ୍ଧ କରିବା ପାଇଁ 'ବହିଷ୍କୃତ ହିତକାରଣୀ ସଭା' ସ୍ଥାପନ କରିଥିଲେ । ଦଳିତମାନଙ୍କ ଉନ୍ନତିକଳ୍ପେ ଆମ୍ବେଦକରଙ୍କର ବିରାମହୀନ ସଂଗ୍ରାମର ସ୍ୱୀକୃତିସ୍ୱରୂପ ବମ୍ବେର ଗଭର୍ଣ୍ଣର ତାହାଙ୍କୁ ୧୯୨୭ ସାଲରେ ବମ୍ବେ ବିଧାନ କାଉନସିଲର ସଦସ୍ୟ ରୂପେ ମନୋନୀତ କରିଥିଲେ ।

ଭାରତର ଶାସନ କ୍ଷେତ୍ରରେ ବ୍ୟାପକ ସଂସ୍କାର ଆଣିବା ପାଇଁ ଜନ୍ ସାଇମନଙ୍କ ଅଧ୍ୟକ୍ଷତାରେ ୧୯୨୭ ସାଲରେ ଗଠିତ କମିଟିକୁ ଭାରତୀୟ ଜାତୀୟ କଂଗ୍ରେସ ପ୍ରତ୍ୟାଖ୍ୟାନ କରିଥିଲେ ମଧ୍ୟ ବହୁ ସଂଖ୍ୟାଲଘୁ ଦଳ ଓ ଦଳିତବର୍ଗ ଏହାକୁ ସ୍ୱାଗତ କରିଥିଲେ । ବମ୍ବେ ବିଧାନ କାଉନସିଲ ତଥା 'ବହିଷ୍କୃତ ହିତକାରିଣୀ ସଭା' ପକ୍ଷରୁ ଦଳିତଜାତିକୁ ପର୍ଯ୍ୟାପ୍ତ ସାମ୍ବିଧାନିକ ଅଧିକାର ପ୍ରଦାନ ନିମନ୍ତେ ଆମ୍ବେଦକର ସାଇମନ କମିଶନ ଆଗରେ ୧୯୨୮ ସାଲ ଅକ୍ଟୋବର ମାସରେ ପୁନାଠାରେ ସାକ୍ଷ୍ୟ ପ୍ରଦାନ ସହିତ ୦୭.୦୫.୧୯୨୯ରେ ବମ୍ବେଠାରେ ବିସ୍ତାରିତ ପ୍ରସ୍ତାବମାନ ପେଶ୍ କରିଥିଲେ । ସାଇମନ କମିଶନଙ୍କ ପ୍ରଦତ୍ତ ପ୍ରସ୍ତାବମାନଙ୍କ ଉପରେ ସବିସ୍ତାର ଆଲୋଚନା କରିବା ପାଇଁ ଲଣ୍ଡନରେ ୧୨.୧୧.୧୯୩୦ରୁ ଆରମ୍ଭ ହୋଇଥିବା ପ୍ରଥମ ଗୋଲ୍‌ଟେବୁଲ ଅଧିବେଶନରେ ଯୋଗଦେଇ ଆମ୍ବେଦକର ତାଙ୍କର ଜ୍ୱାଳାମୁଖୀ ଭାଷଣରେ କହିଥିଲେ, 'ଭାରତର ଏକ ପଞ୍ଚମାଂଶ ଜନ ସମ୍ପ୍ରଦାୟ ଦଳିତ ଜାତିରୁ ଆସିଛନ୍ତି, ଯେଉଁମାନଙ୍କୁ ଉଚ୍ଚବର୍ଗର ଉଗ୍ରଶୋଷଣ ଓ ମତାନ୍ଧତା ମଧ୍ୟରେ କ୍ରୀତଦାସ ରୂପେ ରଖାଯାଇଛି, ପରିଣାମରେ ସେମାନେ ଦାରୁଣ ନିର୍ଯାତନା ଓ ଯନ୍ତ୍ରଣା ଭୋଗି ଚାଲିଛନ୍ତି ।

ଭାରତରେ କଂଗ୍ରେସ ଆଦି ବହୁ ରାଜନୈତିକ ଦଳ ସେ ସମୟରେ ସ୍ୱାଧୀନତା ପ୍ରାପ୍ତି ପାଇଁ ସଂଗ୍ରାମ କରୁଥିଲେ । ଏହି ପରିସ୍ଥିତିକୁ ଲକ୍ଷ୍ୟ କରି ଆମ୍ବେଦକର କହିଥିଲେ, 'ମୁଁ ଅତ୍ୟନ୍ତ ଆତଙ୍କିତ ଯେ, ବର୍ତ୍ତମାନର ଏହି ପରିସ୍ଥିତିରେ ଭାରତ ଯଦି ସ୍ୱାଧୀନତା ଲାଭ କରେ, ତା'ହେଲେ ଉଚ୍ଚବର୍ଗର ଜାତିମାନଙ୍କ ଦ୍ୱାରା ଅସ୍ପୃଶ୍ୟମାନେ ଅଧିକ ଦୟନୀୟ ଓ ଅକଥନୀୟ ଭାବେ ନିର୍ଯାତନା ଏବଂ ନିଷ୍ପେଷିତ ହେବେ ।' ମହାତ୍ମାଗାନ୍ଧୀ ୧୯୩୧ ସାଲର ମଧ୍ୟଭାଗରେ ଆମ୍ବେଦକରଙ୍କର ଏହି ବକ୍ତବ୍ୟକୁ ସମର୍ଥନ ଜଣାଇ କହିଥିଲେ, 'ଅସ୍ପୃଶ୍ୟତାକୁ ହ୍ରାସ ନକରି ଆମେ ଯଦି କ୍ଷମତାକୁ ଆସୁ, ତା'ହେଲେ ମୁଁ ନିଶ୍ଚିତ ଭାବେ ବିଶ୍ୱାସ କରେ ଯେ ଅସ୍ପୃଶ୍ୟମାନଙ୍କ ଅବସ୍ଥା ସ୍ୱରାଜ୍ୟ ପ୍ରାପ୍ତିପରେ ଅଧିକ ଶୋଚନୀୟ ହେବ, କାରଣ ଆମର କୁସଂସ୍କାରଜନିତ ମତାନ୍ଧତା ମଧ୍ୟରେ କ୍ଷମତାପ୍ରାପ୍ତମାନେ ଅଧିକ ବଳଶାଳୀ ହୋଇଯିବେ ।'

ଗାନ୍ଧିଜୀ ଓ ଆମ୍ବେଦକରଙ୍କର ଉଭୟ ଦ୍ୱିତୀୟ ଗୋଲ୍‌ଟେବୁଲ ବୈଠକରେ ଯୋଗ ଦେବାପାଇଁ ଲଣ୍ଡନରେ ୧୯୩୧ ସାଲ ସେପ୍ଟେମ୍ବର ମାସର ମଧ୍ୟଭାଗରେ ପହଞ୍ଚିଥିଲେ । ଆମ୍ବେଦକର ଅସ୍ପୃଶ୍ୟ ଜାତି ସମେତ ଭାରତର ସଂଖ୍ୟାଲଘୁ ସମ୍ପ୍ରଦାୟ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଦାବି କରିଥିଲେ । ଲଣ୍ଡନର ପ୍ରଧାନମନ୍ତ୍ରୀ ରାମ୍‌ସେ ମ୍ୟାକ୍‌ଡୋନାଲଡ୍ ଏହି ପ୍ରସ୍ତାବକୁ ଅକୁଣ୍ଠ ସମର୍ଥନ ଜଣାଇଥିଲେ । ଏହାର ପ୍ରତ୍ୟୁତ୍ତରରେ ମହାତ୍ମାଗାନ୍ଧୀ କହିଥିଲେ – 'ଆମ୍ଭେମାନେ ଅସ୍ପୃଶ୍ୟତାର କଳଙ୍କକୁ ବିଲୋପ





କରିବା ପାଇଁ ପ୍ରତିଶ୍ରୁତିବଦ୍ଧ । ଶିଖ୍‌ମାନେ ଚିରକାଳ ଶିଖ୍ ହୋଇ ରହିବେ, ମୁସଲମାନ, ଖ୍ରୀଷ୍ଟିଆନ ଆଉ ୟୁରୋପୀୟମାନେ ସେହିପରି ଚିରକାଳ ରହିପାରନ୍ତି, ମାତ୍ର ଅସ୍ପୃଶ୍ୟମାନେ ଚିରକାଳ କ'ଣ ଅସ୍ପୃଶ୍ୟ ହୋଇ ରହିବେ ?'

ମହାତ୍ମାଗାନ୍ଧୀ ଲଣ୍ଡନରୁ ବମ୍ବେକୁ ୨୮.୧୨. ୧୯୩୧ରେ ଫେରିଲେ, ଆଉ ୦୪.୦୧.୧୯୩୨ ରେ ପୁନା ନିକଟସ୍ଥ ୟେରଓ୍ୱାଡ଼ା ଜେଲରେ ବନ୍ଦୀ ହୋଇରହିଲେ । ଏହାର ଛଅମାସ ପରେ ଆମ୍ବେଦକର ଲଣ୍ଡନ ଯାଇ ଅସ୍ପୃଶ୍ୟମାନଙ୍କର ଦାବି ହାସଲ ପାଇଁ ଅବିରାମ ପ୍ରଚେଷ୍ଟା ଚଳାଇଲେ । ଅବଶେଷରେ ୧୭.୦୮.୧୯୩୨ରେ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ରାମ୍‌ସେ ମ୍ୟାକ୍‌ଡୋନାଲଡ଼ ତାହାଙ୍କର ସାମ୍ପ୍ରଦାୟିକ ଘୋଷଣାନାମା ପ୍ରଚାରିତ କଲେ । ଏହାରି ମାଧ୍ୟମରେ ଅସ୍ପୃଶ୍ୟ ଜାତି ସମେତ ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କୁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ମିଳିଲା । ମାତ୍ର ଏହାରି ଦ୍ୱାରା ହିନ୍ଦୁସମାଜ, ସବର୍ଣ୍ଣ ଓ ଅସ୍ପୃଶ୍ୟ ଗୋଷ୍ଠୀମଧ୍ୟରେ ବିଭାଜନ ହେବାର ଆଶଙ୍କା ରହିଥିଲା । ଏହି ଘୋଷଣାନାମାକୁ ତୀବ୍ରଭାବରେ ବିରୋଧ କରି ମହାତ୍ମାଗାନ୍ଧୀ ୟେରଓ୍ୱାଡ଼ା ଜେଲ୍‌ର ମଧ୍ୟଭାଗରେ ଏକ ଆମ୍ରବୃକ୍ଷର ବିସ୍ତାରିତ ଶୀତଳଛାୟା ତଳେ ଏକ ଖଟ ଉପରେ ଆସୀନ ରହି ତାଙ୍କର ଯୁଗାନ୍ତକାରୀ ଅବିସ୍ମରଣୀୟ ଆମରଣ ଅନଶନ ୨୦.୦୯. ୧୯୩୨ମଧ୍ୟାହ୍ନରେ ଆରମ୍ଭ କଲେ ।

ସମାଧାନ ସୂତ୍ର ଅନ୍ୱେଷଣରେ ମହାତ୍ମାଗାନ୍ଧୀଙ୍କ ସହିତ ବହୁ ଜାତୀୟ ନେତୃବର୍ଗ ଓ ଆମ୍ବେଦକରଙ୍କ ମଧ୍ୟରେ ଆଳାପ ଆଲୋଚନା ଆରମ୍ଭ ହେଲା । ଉତ୍କଣ୍ଠା ଓ ଆବେଗରେ ବ୍ୟଥିତ ମହାତ୍ମା ଗାନ୍ଧୀଙ୍କ ସ୍ୱାସ୍ଥ୍ୟର ଦ୍ରୁତ ଅବନତି ଘଟିବାକୁ ଲାଗିଲା । ତାହା ଥିଲା ମହାତ୍ମାଗାନ୍ଧୀଙ୍କର ହିନ୍ଦୁ ସମାଜକୁ ସମ୍ଭାବ୍ୟ ଆଶୁ ବିଭାଜନର ଅତଳ ଦ୍ୱାରଦେଶରୁ ଉଦ୍ଧାର କରିବା ପାଇଁ ଆତ୍ମବଳିଦାନର ଏକ ଯୁଗାନ୍ତକାରୀ ପ୍ରଚେଷ୍ଟା । ଏହି ସମୟରେ ସମଗ୍ର ଭାରତ ଯେପରି ଏକ ତୀବ୍ର ବ୍ୟଥିତ ଆଲୋଡ଼ନ ଆଉ ଶିହରଣ ମଧ୍ୟରେ ଉଦ୍‌ବେଳିତ ହୋଇଉଠିଲା । ଆତଙ୍କର ଉଜୁଡ଼ା ବାଦଲ ଯେପରି ସାରା ରାଜନୈତିକ ବାତାବରଣକୁ ଆଚ୍ଛନ୍ନ ଆଉ ଆକ୍ରାନ୍ତ କରି ରଖିଥିଲା । ମହାତ୍ମାଗାନ୍ଧୀଙ୍କର ଆତ୍ମୋତ୍ସର୍ଗ ଓ ବଳିଦାନକୁ ସମର୍ଥନ ଜଣାଇ ଅନେକ ହିନ୍ଦୁ ମନ୍ଦିରର ଦ୍ୱାର ଦଳିତମାନଙ୍କ ପାଇଁ ଉନ୍ମୋଚିତ ହେଲା ।

ଅବଶେଷରେ ପାରସ୍ପରିକ ଆଲୋଚନା, ସହୃଦୟତାର ପରିଧି ମଧ୍ୟରେ ମହାତ୍ମାଗାନ୍ଧୀ ଓ ଆମ୍ବେଦକର ଉଭୟେ ଅସ୍ପୃଶ୍ୟମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ବଦଳରେ ଯୌଥ ନିର୍ବାଚନ ମଣ୍ଡଳୀ ପାଇଁ ସମ୍ମତି ପ୍ରଦାନକଲେ । ପ୍ରକୃତରେ ମହାତ୍ମାଗାନ୍ଧୀଙ୍କ ଅମୂଲ୍ୟ ଜୀବନକୁ ରକ୍ଷା କରିବା ପାଇଁ ଆମ୍ବେଦକରଙ୍କୁ ଅସ୍ପୃଶ୍ୟମାନଙ୍କର ସ୍ୱାର୍ଥର କିଛି ବଳିଦାନ ଦେବାକୁ ପଡ଼ିଲା ।

ସେ ଯାହା ହେଉ, ଆଲୋଚନାର ଅନ୍ତିମ ପର୍ଯ୍ୟାୟରେ ଅଭିଭୂତ ଆମ୍ବେଦକର ବିହ୍ୱଳିତ ଭାବାବେଗ କଣ୍ଠରେ କହିଲେ, 'ହଁ, ମହାତ୍ମାଗାନ୍ଧୀ ! ମୁଁ ଆପଣଙ୍କର ଜୀବନରକ୍ଷା ଲାଗି ଅତ୍ୟନ୍ତ ଉଦ୍‌ବିଗ୍ନ ଥିଲି । ଆପଣ ଦଳିତଜାତିର ମଙ୍ଗଳ ପାଇଁ ଯଦି ସାରା ଜୀବନକୁ ବିନିଯୋଗ କରନ୍ତି ତାହା ହେଲେ, ଆପଣ ହିଁ ଆମ୍ଭର ନେତାହୋଇ ମାର୍ଗଦର୍ଶନ ପ୍ରଦାନ କରିବେ ।' ମହାତ୍ମାଗାନ୍ଧୀ ମୌନତା ଓ ନୀରବତା ମଧ୍ୟରେ ସମ୍ମତି ପ୍ରଦାନ କରିଥିଲେ ମଧ୍ୟ ତାହାଙ୍କ ଆଗରେ ଉଭା ହୋଇଥିଲା ଦୁଇଟି ଅଲଂଘ୍ୟ ସମସ୍ୟା । ତାହାଥିଲା ତାହାଙ୍କର ମୁକ୍ତି ସଂଗ୍ରାମ ଏବଂ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ଐକ୍ୟ ପ୍ରତିଷ୍ଠା ।



ମହାତ୍ମାଗାନ୍ଧୀ ଓ ଆମ୍ବେଦକରଙ୍କ ମଧ୍ୟରେ ଗୃହୀତ ଯୁଗ୍ମ ନିଷ୍ପତ୍ତିକୁ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଗ୍ରହଣ କଲେ ଆଉ ୨୬.୦୯.୧୯୩୨ ସାୟାହ୍ନରେ ରବୀନ୍ଦ୍ରନାଥ ଠାକୁରଙ୍କ କଣ୍ଠରୁ ଉତ୍ସରିତ ସୁଲଳିତ ଗାନର ସୁର ଝଙ୍କାର ମଧ୍ୟରେ କସ୍ତୁରବାଙ୍କଠାରୁ କମଳା ରସ ଏକ ଗ୍ଲାସ ଗ୍ରହଣ କରି ମହାତ୍ମାଗାନ୍ଧୀ ଅନଶନ ଭଙ୍ଗ କଲେ । ଆଉ ସମଗ୍ର ଦେଶ ଏକ ସ୍ୱସ୍ତିର ଦୀର୍ଘଶ୍ୱାସ ମଧ୍ୟରେ ଯେପରି ଘନ ଆଶ୍ୱାସର ଆଶ୍ଳେଷରେ ଶିହରି ଉଠିଲା ।

ଏହାର ପରବର୍ତ୍ତୀକାଳରେ ଦୀର୍ଘଦିନ ଧରି ମହାତ୍ମାଗାନ୍ଧୀ ୟେରଓ୍ୱାଡ଼ା ଜେଲରେ କାରାବାସ ଦଣ୍ଡ ଭୋଗିଥିଲେ ମଧ୍ୟ ଦଳିତମାନଙ୍କ ମୁକ୍ତି ପାଇଁ ତାଙ୍କର ଚିନ୍ତାରାଜ୍ୟ ଆକ୍ରାନ୍ତ ହୋଇ ରହିଥିଲା । ସେ ୧୯୩୩ ସାଲର ଫେବୃୟାରୀ ମାସରେ ଦଳିତମାନଙ୍କ ଦୁରୂହ ସମସ୍ୟାର ନିରାକରଣ ପାଇଁ 'ହରିଜନ ସେବକ ସଂଘ' ନାମରେ ଏକ ସଂସ୍ଥା ସ୍ଥାପନ କରିଥିଲେ । ପୂର୍ବରୁ ମହାତ୍ମାଗାନ୍ଧୀଙ୍କ ଦ୍ୱାରା ଅହମ୍ମଦାବାଦରୁ ପ୍ରକାଶିତ 'ୟଙ୍ଗ୍ ଇଣ୍ଡିଆ' ବଦଳରେ ୧୧.୦୨.୧୯୩୩ରେ 'ହରିଜନ' ପତ୍ରିକାର ନିୟମିତ ପ୍ରକାଶନ ଆରମ୍ଭ ହେଲା । ଗାନ୍ଧିଜୀ ୧୯୩୩ସାଲ ଜୁନ୍‌ମାସର ପ୍ରାରମ୍ଭରେ ଜେଲ୍‌ରୁ ଖଲାସ ହୋଇ ସାବରମତୀ ଆଶ୍ରମକୁ ଦଳିତ ଜାତିର ଉନ୍ନତି କଳ୍ପେ ଦାନ କରିଥିଲେ । ନିଷ୍ପେଷିତ ଦଳିତ ତଥା ନିମ୍ନବର୍ଗର ଲୋକମାନଙ୍କୁ ଆର୍ଥିକ କ୍ଷେତ୍ରରେ ସଂସ୍ଥାପନ କରିବା ପାଇଁ ଗାନ୍ଧିଜୀ ୨୬.୧୦.୧୯୩୪ରେ 'ଅଖିଳ ଭାରତ ଗ୍ରାମୋଦ୍ୟୋଗ ସଂଘ' ସ୍ଥାପନ କରିଥିଲେ ।

ଦଳିତବର୍ଗଙ୍କ ଉତ୍‌ଥାନ ତଥା ପୁନରୁଦ୍ଧାର କଳ୍ପେ ମହାତ୍ମାଗାନ୍ଧୀ ଓଡ଼ିଶାରେ ଯୁଗାନ୍ତକାରୀ ସୁଦୀର୍ଘ ହରିଜନ ପଦଯାତ୍ରା ୦୫.୦୫.୧୯୩୪ରୁ ୦୮.୦୬. ୧୯୩୪ମଧ୍ୟରେ ସମାହିତ କରିଥିଲେ । ମହାତ୍ମାଗାନ୍ଧୀ ମଧୁସୂଦନଙ୍କର ଘନିଷ୍ଠ ସମ୍ପର୍କରେ ୧୯୨୦ସାଲରୁ ୧୯୨୭ସାଲ ପର୍ଯ୍ୟନ୍ତ ଆସିଥିଲେ । ଦଳିତବର୍ଗର ଆର୍ଥିକ ସଂସ୍ଥାନ ପାଇଁ ମଧୁସୂଦନଙ୍କର କ୍ରାନ୍ତିକାରୀ ପ୍ରକଳ୍ପ 'ଉତ୍କଳ ଟ୍ୟାନେରୀ'କୁ ୧୯.୦୮.୧୯୨୫ରେ ଦର୍ଶନ କରି ମହାତ୍ମା ତନ୍ମୟ ଆଉ ଅଭିଭୂତ ହୋଇଯାଇଥିଲେ । ଦଳିତବର୍ଗଙ୍କର ସାମଗ୍ରିକ ଉନ୍ନୟନ ପାଇଁ ମଧୁସୂଦନଙ୍କର ଐକାନ୍ତିକ ପ୍ରଚେଷ୍ଟାରେ ପ୍ରଯୋଜିତ ଅଭିନବ ଯୋଜନା ସବୁ ଗାନ୍ଧିଜୀଙ୍କୁ ଗଭୀରଭାବେ ପ୍ରଭାବିତ କରିଥିଲା । ଓଡ଼ିଶାରେ ତାଙ୍କର ଅବିସ୍ମରଣୀୟ ପଦଯାତ୍ରାର ସମାପ୍ତି ପରେ ମହାତ୍ମାଗାନ୍ଧୀ ମଧୁସୂଦନଙ୍କ ପ୍ରତି ଅସୀମ ଭକ୍ତି ଓ ଶ୍ରଦ୍ଧା ନିବେଦନ କରି ୦୭.୦୯. ୧୯୩୪ରେ 'ହରିଜନ' ପତ୍ରିକାରେ ଲେଖିଥିଲେ, 'ସ୍ୱର୍ଗତଃ ମଧୁସୂଦନ ଦାସ ସମାଜର ଏକ ଅଂଶ ପ୍ରତି ଯେଉଁ ନିର୍ଘାତ ଦୟନୀୟ ଅପରାଧ କରାଯାଉଛି, ସେ ସମ୍ପର୍କରେ ମୋର ଆଖି ଖୋଲି ଦେଇଥିଲେ । ଏ କ୍ଷେତ୍ରରେ ଆମ୍ଭେମାନେ ଯେଉଁ ଅମାନୁଷିକ ଅପରାଧ କରିଚାଲିଛେ ତାହାର ପ୍ରାୟଶ୍ଚିତ ଓ ନିରାକରଣ ପାଇଁ ମଧୁସୂଦନ ଦାସ ଗୋଟିଏ ଅତ୍ୟନ୍ତ ପ୍ରଭାବଶାଳୀ ଶିକ୍ଷାମୂଳକ ଚମଡ଼ା କଷେଇ କାରଖାନା ଖୋଲିଥିଲେ ।'

ପୂର୍ବୋକ୍ତ ଆଲେଚନାରୁ ଜଣାଯାଏ ଯେ ୧୯୨୭ରୁ ୧୯୩୩ସାଲ ମଧ୍ୟରେ ଅସ୍ପୃଶ୍ୟମାନଙ୍କ ପାଇଁ ଯଥାର୍ଥ ସ୍ଥାନ ନିରୂପଣ ଓ ସ୍ୱାର୍ଥରକ୍ଷାର ପ୍ରତିରୋଧରେ ସାରାଦେଶର ପରିସ୍ଥିତି ଅତ୍ୟନ୍ତ ବିକ୍ଷୁବ୍ଧ ସ୍ଥିତିକୁ ଆସିଥିଲା, ଯହିଁରୁ ସୃଷ୍ଟି ହୋଇଥିବା ଘୂର୍ଣ୍ଣିଝଡ଼ର ଅଶାନ୍ତ ଓ ଧୂସରିତ ବାତାବରଣ ଥମିବା ପାଇଁ ଦୀର୍ଘ ସମୟ ଲାଗିଥିଲା ।

ମହାତ୍ମାଗାନ୍ଧୀ ୧୯୩୪ ସାଲର ପରବର୍ତ୍ତୀ ପର୍ଯ୍ୟାୟରେ ମୁଖ୍ୟତଃ ଦେଶର ମୁକ୍ତି ସଂଗ୍ରାମରେ ନିମଜ୍ଜିତ ରହିଥିଲେ । ମାତ୍ର ଆମ୍ବେଦକର ଦେଶର ସାମଗ୍ରିକ ସମସ୍ୟା ସହିତ ଜଡ଼ିତଥିଲେ ମଧ୍ୟ ଐକାନ୍ତିକ ଭାବେ ଦଳିତସମାଜର ମୁକ୍ତି ଓ ଆର୍ଥିକ ସଂସ୍ଥାନ କ୍ଷେତ୍ରରେ କ୍ରାନ୍ତିକାରୀ ସଂଗ୍ରାମକୁ ଅବ୍ୟାହତ ରଖିଥିଲେ । ତେଣୁ ସ୍ୱାଧୀନତାର ପରବର୍ତ୍ତୀ କାଳରେ ଆମ୍ବେଦକର ଭାରତୀୟ ସମ୍ବିଧାନର ଏକନିଷ୍ଠ ପ୍ରଣେତା ରୂପେ ନିଷ୍ପେଷିତ ଦଳିତ ଜନଜାତିଙ୍କ ଜାଗରଣ ଓ ଉତ୍ଥାନ ପାଇଁ ସମ୍ବିଧାନର ପରିଧି ମଧ୍ୟରେ ବହୁ ବୈପ୍ଳବିକ ବିଧାନ ସନ୍ନିବେଶିତ କରିଥିଲେ, ଯାହା ଦଳିତ ତଥା ଜନଜାତିଙ୍କ ପାଇଁ ଚିରନ୍ତନ ପ୍ରଗତିର ପଥ ଉନ୍ମୁକ୍ତ କରିଥିଲା ।

('ସମଦୃଷ୍ଟି'-୧-୧୫ ଅକ୍ଟୋବର-୨୦୦୮)
















# ବେଦାନ୍ତ:

# କଳାହାଣ୍ଡି...କଳାହାଣ୍ଡି କପ୍...

# ରଥଯାତ୍ରା... ଓଡ଼ିଶା...

ବହୁକାଳରୁ ପ୍ରଚଳିତ ହୋଇଆସୁଛି ଓଡ଼ିଶାର ପ୍ରମୁଖ କ୍ରିକେଟ୍ ଟୁର୍ଣ୍ଣାମେଣ୍ଟ, ଯାହାର ନାମ ଅଚ୍ଛେଦ୍ୟ ଭାବେ ନାମିତ ହୋଇଆସିଛି କଳାହାଣ୍ଡି । ଏହାଥିଲା ଓଡ଼ିଶାର ସ୍ୱାଭିମାନର ପ୍ରତୀକ । ଯାହା ଏକାନ୍ତ ଭାବେ ବହନ କରିଥିଲା ଉତ୍କଳ ଜନନୀଙ୍କର ପୁଣ୍ୟା ପ୍ରତିରୂପର ଏକ ଅନନ୍ୟ ଆହ୍ଲାଦଦାୟିନୀ ବିଭବ କଳାହାଣ୍ଡି । ହଁ, ସେହି ଅପୂର୍ବ କଳାହାଣ୍ଡିର ନାମ ଶ୍ରବଣରେ ଏକ ଉଦ୍‌ବେଳନ ସୃଷ୍ଟିହୁଏ । ଆଉ ସେହି ଉଚ୍ଚକିତ ନାମର ଉଚ୍ଚାରଣରେ ଉନ୍ମାଦନା ଭରା ଶିହରଣର ତରଙ୍ଗ ଖେଳିଯାଏ । ପ୍ରକୃତିର ବିପୁଳ ଐଶ୍ୱର୍ଯ୍ୟ ଘେନି ଶିରି ମେଖଳାମଣ୍ଡିତ ଅସଂଖ୍ୟ ଉଦ୍ଦାମ ଚିରି ଝରଣା ଆଉ ଜଳପ୍ରପାତ ସମନ୍ୱିତ ଥୁଆମୂଳ ରାମପୁର, ଭଞ୍ଜୁକାଠ ପର୍ବତମାଳାର ଧାରେ ଧାରେ ପ୍ରାଗ୍-ଐତିହାସିକ ଯୁଗର ସମୃଦ୍ଧିର ସଙ୍କେତ ବହନ କରୁଥିବା ଅସୁରଗଡ଼, ଆଉ ବହୁ କଳାଭାସ୍କର୍ଯ୍ୟର କୀର୍ତ୍ତିମାଳା ବିମଣ୍ଡିତ ବେଲଖଣ୍ଡି ଆଜି ମଧ୍ୟ ଦୁରନ୍ତ ଆକର୍ଷଣର କେନ୍ଦ୍ରବିନ୍ଦୁ ସାଜିଛି । ଆଉ କଳାହାଣ୍ଡିର ଅତ୍ୟନ୍ତ ମାର୍ଜିତ ଜନସମାଜ ଯାହାଙ୍କର ସୁମଧୁର କଣ୍ଠରୁ ଉଚ୍ଚରିତ ପଦ୍ୟମୟ ଗୀତିକାରୁ ନିର୍ଝରିତ ବାର୍ତ୍ତାଳତା ସହିତ ସଙ୍ଗୀତମୟ ଲୋକଗୀତର ପରମ୍ପରା ଆଜି ମଧ୍ୟ ସାମାଜିକତାକୁ ଅନିର୍ବଚନୀୟ ତନ୍ମୟତାରେ ଭରିଦିଏ । ମାୟାଧର ମାନସିଂହଙ୍କର ଆତ୍ମଚରିତରେ ବିଭାମୟୀ କଳାହାଣ୍ଡି ପ୍ରକୃତିର ଅନନ୍ୟ ଉପସ୍ଥାପନ ଅବା କେଦାରନାଥ ମହାପାତ୍ରଙ୍କର ଅପୂର୍ବ ଅନୁସନ୍ଧିତ୍ସାରେ ପଥିକୃତ ବିରଳ ପ୍ରତ୍ନତାତ୍ତ୍ୱିକ ସମ୍ପଦ ଏବେ ମଧ୍ୟ କଳାହାଣ୍ଡିର କାଳଜୟୀ ସଂସ୍କୃତି ଓ ସାହିତ୍ୟ ପରମ୍ପରାକୁ ଉଜ୍ଜୀବିତ କରି ରଖିଛି । କୀର୍ତ୍ତିଶାଳିନୀ ଓଡ଼ିଶା ଜନନୀଙ୍କର ଏକ ପ୍ରତିଭୂ କଳାହାଣ୍ଡିର ଜନସମାଜ ଆଉ ରାଜପରିବାରର ସମନ୍ୱିତ ଐଶ୍ୱର୍ଯ୍ୟମୟୀ ଅବଦାନରେ ପ୍ରତିଷ୍ଠିତ ହୋଇଥିଲା କଳାହାଣ୍ଡି କପ୍, ଯାହା କ୍ରିକେଟ ଖେଳାଳିମାନଙ୍କ ମଧ୍ୟରେ ସୃଷ୍ଟି କରୁଥିଲା ରୋମାଞ୍ଚ ଆଉ ଉନ୍ମାଦନା । ହାୟଟା ଆଦି ସହରରେ ଗୌରବ ଗାଥାର ପରମ୍ପରାର ଆଦି ଓଡ଼ିଶା ଭୂଇଁରୁ ଅବଲୁପ୍ତି ଘଟିଛି ଏକ ନିର୍ଘାତ ଅସ୍ୱାଭାବିକ ସ୍ଥିତିରେ । ତାହାର ନାମ କଳାହାଣ୍ଡିକୁ ଏକରକମ ତିରୋହିତ କରି ତାହାର ନାମ ଆଗରେ ସ୍ଥାପିତ ହୋଇ ପ୍ରଶ୍ନବାଚକ ଚିହ୍ନ ସଂଯୁକ୍ତ ଏକ

କମ୍ପାନୀର ନାମ ବେଦାନ୍ତ, ଯାହା କଳାହାଣ୍ଡିର ପ୍ରାକୃତିକ ବିଭବକୁ ଅବଲୁପ୍ତ କରିବାରେ ନିମଗ୍ନ ରହିଛି । ହଁ, ଆଜି ସେହି ଜନଶ୍ରୁତିରେ ଆଖ୍ୟାୟିତ ନାମ କଳାହାଣ୍ଡି କପ୍‌ର ନାମ ପରିବର୍ତ୍ତନ ହୋଇଯାଇଛି ବେଦାନ୍ତ କଳାହାଣ୍ଡି କପ୍ । ଏହା ପଶ୍ଚାତ୍‌ରେ ରହିଛି ଏକ ସାଂକେତିକ ଉତ୍‌ପ୍ରେକ୍ଷା । ତାହା ହେଉଛି କଳାହାଣ୍ଡି ଜିଲ୍ଲାରେ ଏହି କମ୍ପାନୀର ସର୍ବବ୍ୟାପତା ମଧ୍ୟରେ କଳାହାଣ୍ଡି ଜିଲ୍ଲାର ନାମର ଅବଲୁପ୍ତିର ବୋଧହୁଏ ତାହା ବେଦାନ୍ତ ନାମରେ ଅଭିହିତ ହେବା । ବେଦାନ୍ତ ଐଶ୍ୱର୍ଯ୍ୟଶାଳା ସମୃଦ୍ଧିର ଗନ୍ତାଘର ତୁଳନାରେ କଳାହାଣ୍ଡିର ଦାରିଦ୍ର୍ୟ ବୋଧହୁଏ ପରିଣତ ହେବ ଅଟ୍ଟହାସଜନିତ ଉପହାସରେ । କଳାହାଣ୍ଡି ନାମ ଆଗରେ ବେଦାନ୍ତ ନାମର ଅଗ୍ରଭାଗରେ ସ୍ଥାପନା ଉଦ୍‌ଘୋଷିତ କରୁଛି ଓଡ଼ିଆ ଜାତୀୟତାର ଚରମ ଅବଲୁପ୍ତି ଆଉ ତୋଷାମୋଦକାରିତାର ନିର୍ଘାତ ପରିପ୍ରକାଶ । ନିୟମଗିରି ପର୍ବତଶ୍ରେଣୀର ଜୈବ ବିବିଧତା ମଧ୍ୟରେ ଆଦିବାସୀ ଡଙ୍ଗରିଆ କନ୍ଧ ଜାତିର ସ୍ୱୟଂ ବିକଶିତ ଆଦିବାସୀ ପରମ୍ପରା । ଏହି ଅଞ୍ଚଳରେ ଖଣିଜ ସମ୍ପଦର ଉତ୍ତୋଳନରେ ଏହା ଧ୍ୱଂସସ୍ତୂପରେ ପରିଣତ ହେବ ବୋଲି ପ୍ରଖ୍ୟାତ ସାହିତ୍ୟିକ ଗୋପୀନାଥ ମହାନ୍ତିଙ୍କ 'ଅଲୋଡ଼ା' ଗଳ୍ପର ବିଭୀଷିକାମୟ ଚେତାବନୀ ଆଉ ଦୁଇଟି ଜୀବନଧର୍ମୀ ପ୍ରାମାଣିକ ଚିତ୍ରର ଉପସ୍ଥାପନା ସତ୍ତ୍ୱେ ସମସ୍ତ ଯେପରି ଅଥର୍ବ, ଚେତନାହୀନତାରେ ପରିଣତ ହୋଇଯାଇଛି । ଶିଳ୍ପାୟନର ଉତ୍କଟ ବିଜ୍ଞାପନର ଉଦ୍‌ଘୋଷଣା, ଓଡ଼ିଆ ସଂସ୍କୃତି ଆଉ ପରମ୍ପରାକୁ ବୀଭତ୍ସ ଉପହସିତ ଅବସ୍ଥାକୁ ଘେନିଆସିଛି । ତହିଁରେ ଓଡ଼ିଆ ଦେବତାମାନେ ପରିଣତ ହେଉଛନ୍ତି ପଣ୍ୟସାମଗ୍ରୀର । ହଁ ଏବେ ମନେପଡ଼େ, ରଥଯାତ୍ରାର ଧାରା ବିବରଣୀର ଅନ୍ତରାଳରେ ବହିରାଗତ କମ୍ପାନୀମାନଙ୍କର ଘନ ଘନ ଆବର୍ତ୍ତିତ ଅରୁଚିସମ୍ପନ୍ନ ବିଜ୍ଞାପନର ପରିପ୍ରସାର ଓଡ଼ିଆ ଧର୍ମ ସଂସ୍କୃତି, ପରମ୍ପରାକୁ ପ୍ରଚଣ୍ଡ ଆଘାତ ପ୍ରଦାନ କରି ଚାଲିଛି ନିର୍ବିବାଦରେ । ଓଡ଼ିଆ ଜାତିର ଆତ୍ମିକ ହୃଦ୍‌କେନ୍ଦ୍ର ଶ୍ରୀଜଗନ୍ନାଥ ତ୍ରିମୂର୍ତ୍ତି ଯାହାଙ୍କର ପବିତ୍ରତା, ଐତିହ୍ୟ ଓ ପରମ୍ପରାକୁ ରକ୍ଷା କରିବାପାଇଁ ପ୍ରାୟ ଦଶମ ଶତାବ୍ଦୀର ଯଯାତି କେଶରୀଙ୍କଠାରୁ ପରାଧିନତାର ବିଶ୍ଳେଷଣ ମଧ୍ୟରେ ଯେଉଁ ଜାତି ଆତ୍ମବଳିଦାନ ମଧ୍ୟରେ ନିରବଚ୍ଛିନ୍ନ ଭାବରେ ସଂଗ୍ରାମ କରି ଆସିଥିଲା, ଆଜି ବହିରାଗତ ଶିଳ୍ପପତିମାନଙ୍କର ବିଜ୍ଞାପନର ଅସାମାଜିକତାର ଆଚରଣରେ ଶ୍ରୀଜଗନ୍ନାଥ ଯାତ୍ରାର ପରିପ୍ରସାର ମଧ୍ୟରେ ଯେପରି ଅରୁଚିସମ୍ପନ୍ନ ଉପସ୍ଥାପନା ସ୍ଥାନପାଉଛି, ତାହା ଅତ୍ୟନ୍ତ ଉଦ୍‌ବେଗଜନକ । ଏହି ପରମ୍ପରା ଯଦି ଅବ୍ୟାହତ ଏହି ତିନିଗୋଟି ରଥ, କମ୍ପାନୀମାନଙ୍କର ପ୍ରଦର୍ଶନର ଚଳନ୍ତିମଣ୍ଡପ ରୂପେ ଆଉ ଦେବତାମାନେ ମଧ୍ୟ ପଣ୍ୟ ସାମଗ୍ରୀରେ ପରିଣତ ହୋଇଯିବେ, ଆଉ ବିପୁଳ ଅର୍ଥଦାନରେ ଶ୍ରୀମନ୍ଦିର ହୋଇଯିବ ସେମାନଙ୍କର ପ୍ରଜ୍ଞାପନ ମେଢ଼ । ହୁଏତ ଶ୍ରୀମନ୍ଦିର ନାମର ଅଗ୍ରଭାଗରେ କେଉଁ ବହିରାଗତ କମ୍ପାନୀର ନାମ ଉତ୍କୀର୍ଣ୍ଣ ହୋଇରହିବ । ଏହି ପ୍ରକ୍ରିୟାରେ ଓଡ଼ିଶା ପ୍ରଦେଶର ନାମ ମଧ୍ୟ ପରିବର୍ତ୍ତିତ ହୋଇପାରେ ।

<u>*ଧ୍ୱଂସର ସୌଦାଗର:*</u> ଏହି ନିବନ୍ଧଟି ଶେଷ କରିବାର ଅନ୍ତିମ ମୁହୂର୍ତ୍ତରେ ଭୁବନେଶ୍ୱରରେ ଅନୁଷ୍ଠିତ ହୋଇଥିଲା ଓଡ଼ିଶା ପ୍ରଦୂଷଣ ବୋର୍ଡ଼ର ରଜତ ଜୟନ୍ତୀ ଉତ୍ସବ । ଏହି ସମାରୋହରେ ଅଧ୍ୟକ୍ଷତା କରି କେନ୍ଦ୍ର ପ୍ରଦୂଷଣ ବୋର୍ଡ଼ର ସଚିବ ବି.ସେନଗୁପ୍ତ ବଜ୍ର ନିର୍ଘୋଷ କଣ୍ଠରେ ଉଲ୍ଲେଖକଲେ ଯେ, ଆଗାମୀ ଦିନରେ ଓଡ଼ିଶାର ବହୁଭାଗ ପ୍ରଦୂଷଣ ବିଭୀଷିକାର ଧ୍ୱଂସସ୍ତୂପରେ ପରିଣତ ହେବ । ସେ ମଧ୍ୟ ଅତ୍ୟନ୍ତ ଉଦ୍‌ବେଗର ସହିତ ଉଲ୍ଲେଖ କଲେ ଯେ, ଓଡ଼ିଶା ତଥା ଭାରତର କ୍ଷୁଦ୍ରତମ ଜିଲ୍ଲା

ଝାରସୁଗୁଡ଼ାରେ ପ୍ରଦୂଷଣର ବିଭୀଷିକା ଆଜି ଭୟାବହତା ଏପରିକି ଉତ୍କଟ ହେବ ଯେ, ଏକମାତ୍ର ଝାରସୁଗୁଡ଼ା ଜିଲ୍ଲାରେ ଉଦ୍ଭବ ହେଉଥିବା ପ୍ରଦୂଷଣର ପରିମାଣ ସମଗ୍ର ଦେଶରେ ଶିଳ୍ପମାନଙ୍କଠାରୁ ସୃଷ୍ଟି ହେଉଥିବା ପ୍ରଦୂଷଣର ବହୁଗୁଣ ହେବ । ଏହି ଜିଲ୍ଲାରେ ୩୧ ଲକ୍ଷ ଟନ୍ ଆଲୁମିନିୟମ ଉତ୍ପାଦନ ପାଇଁ ନିର୍ଦ୍ଧାରିତ ହୋଇଥିବା ବେଳେ ଏଥିପାଇଁ ଯେଉଁ ୨୦,୦୦୦ ଟନ୍ ମେଗାୱାଟ ଶକ୍ତି ଆବଶ୍ୟକ ହେବ, ସେଥିପାଇଁ ୩.୨୦ ଲକ୍ଷ ଟନ୍ କୋଇଲା ପ୍ରଜ୍ଜଳିତ ହେବ, ତାହା ୧୨,୦୦୦ଟନ୍ ପାଉଁଶ ଆଉ ୧୦୦୦ଟନ୍ ସଲଫର ଡାଇ-ଅକ୍ସାଇଡ଼ ସୃଷ୍ଟି କରିବ । ହଁ, ଏହି ଆଲୁମିନିୟମ କମ୍ପାନୀର ମୁଖ୍ୟକର୍ତ୍ତା ହେଉଛନ୍ତି ବେଦାନ୍ତ । ଏହି ଉତ୍ସବରେ ଓଡ଼ିଶା ପ୍ରଦୂଷଣ ବୋର୍ଡ଼ର ସଚିବ ଏସ୍.ପି. ନନ୍ଦ କହିଲେ, କମ୍ପାନୀମାନେ ଓଡ଼ିଶାର ଶିଳ୍ପାୟନ ପ୍ରକ୍ରିୟାପାଇଁ ଆସୁନାହାନ୍ତି, ସେମାନେ କେବଳ ବ୍ୟକ୍ତିଗତ ଲାଭ ଉଦ୍ଦେଶ୍ୟରେ ଆସୁଛନ୍ତି, ଯାହାର ପରିଣାମରେ ଓଡ଼ିଶାର ପ୍ରଦୂଷଣ ବହୁଗୁଣରେ ବୃଦ୍ଧିପ୍ରାପ୍ତ ହେଉଛି ।

ଇତିହାସର ପଶ୍ଚାତ୍‌କୁ ଦୃଷ୍ଟିନିକ୍ଷେପ କଲେ ଜଣାଯାଏ ଯେ, ମଧୁସୂଦନ ୧୬.୧୦.୧୯୦୫ରେ ରିସ୍‌ଲେ ସାର୍କୁଲାରର ପ୍ରସ୍ତାବନା ମଧ୍ୟରେ କଳାହାଣ୍ଡି, ଝାରସୁଗୁଡ଼ା, ସମ୍ବଲପୁର ସମେତ ପଶ୍ଚିମାଞ୍ଚଳ ଆଉ ଉତ୍ତରାଞ୍ଚଳର ଗଡ଼ଜାତ ସମୂହକୁ ଆଣି ଓଡ଼ିଶା ଡିଭିଜନ ସହିତ କେବଳ ମିଶ୍ରଣ କରିନଥିଲେ, ଏଥିରେ ଗଚ୍ଛିତଥିବା ସମସ୍ତ ପ୍ରାକୃତିକ ଖଣିଜ ଆଉ ଜଳସମ୍ପଦକୁ ଆଣିଥିଲେ । ସେ ଆଣିଥିଲେ ନିୟମଗିରି ପାହାଡ଼ର ବକ୍ସାଇଟ୍ ଆଉ ଝାରସୁଗୁଡ଼ାର ଇବ୍ ଉପତ୍ୟକାରେ ଥିବା ଅଜସ୍ର କୋଇଲା ସମ୍ପଦ । ଓଡ଼ିଶାପ୍ରଦେଶ ସୃଷ୍ଟି ପ୍ରକ୍ରିୟାରେ ନିଃସ୍ୱ ଅବସ୍ଥାରେ ମଧୁସୂଦନ ଶେଷନିଃଶ୍ୱାସ ତ୍ୟାଗ କରିଥିଲେ ମଧ୍ୟ ଏହି ବିପୁଳ ପ୍ରାକୃତିକ ଖଣିଜସମ୍ପତ୍ତିକୁ ଓଡ଼ିଶାର ଜନସମାଜକୁ ବିଶ୍ୱ ସ୍ରଷ୍ଟାର ଦାନ ହିସାବରେ ଦାନକରି ଯାଇଥିଲେ ମଧ୍ୟ ଏହାର ଚରମ ଉଲ୍ଲଂଘନ ଘଟିଚାଲିଛି । ଓଡ଼ିଶାର ଅବିଭକ୍ତ ୧୩ଟି ଜିଲ୍ଲାରୁ ୭ଗୋଟି ଅବିଭକ୍ତ ଜିଲ୍ଲା, ଓଡ଼ିଶାରେ ମିଶାଇ ଥିବାରୁ ଓଡ଼ିଶା ସରକାରଙ୍କର ଅର୍ଦ୍ଧେକ ଆୟ ମଧୁସୂଦନ ପ୍ରଦାନ କରିଆସୁଛନ୍ତି । ଅଥଚ ତାହାଙ୍କର କର୍ମଭୂମି ମଧୁସ୍ମୃତିକୁ ଜାତୀୟ ସ୍ମାରକୀରେ ପରିଣତ ନକରି ମହିଳା କଲେଜର ନିଷିଦ୍ଧାଞ୍ଚଳରେ ଆବଦ୍ଧ କରି ରଖାଯାଇଛି । ଏହାଠାରୁ ବଳି ଅକୃତଜ୍ଞତା ଆଉ ଦେଶଦ୍ରୋହତା ଓଡ଼ିଶା ପ୍ରଶାସନ ପକ୍ଷରେ କ'ଣ ହୋଇପାରେ ? ଏବେ ମନେପଡ଼େ କବି ଗଙ୍ଗାଧରଙ୍କ ଚେତାବନୀ –

ପରଦେଶୁ ଆସି ପରଦେଶ ଜାତି
ଦେଉଛନ୍ତି ଆମ୍ଭ ଅନ୍ନ ଜଳଗ୍ରାସୀ
ଭକୁଆ ପରାୟେ ଭକ ଭକ ଚାହିଁ
ରହିଅଛି ତାଙ୍କ ବଦନ ॥

('ସମଦୃଷ୍ଟି'–୧୬-୩୧ ଅକ୍ଟୋବର-୨୦୦୮)





# ଆଜି ଅବଲୁପ୍ତ 'ମଧୁସ୍ମୃତି'

ଓଡ଼ିଆ ଜାତୀୟତାର ଦ୍ୱିତୀୟ ବାରବାଟୀ ଦୁର୍ଗ-'ମଧୁସ୍ମୃତି' ସ୍ୱତନ୍ତ୍ର ଓଡ଼ିଶାର ନିର୍ମାତା ମଧୁସୂଦନଙ୍କର ଯୁଗାନ୍ତକାରୀ ବାସଭବନ; ଆଜି ସନ୍ତାପିତ ଓଡ଼ିଶାର ଭୂଇଁରୁ ଚିରକାଳ ଲାଗି ଅବଲୁପ୍ତ ଆଉ ଅନ୍ତର୍ହିତ ହୋଇଯାଉଛି । ତାହାହିଁ ଏ ଜାତିର ଅକୃତଜ୍ଞତାର ଏକ ଚରମ ଉଚ୍ଚାଟର ଗରିମା । ତାହାଙ୍କର ସୃଷ୍ଟ ଓଡ଼ିଶା ଅଛି, ମାତ୍ର ତାହାଙ୍କର ସ୍ମୃତିଚିହ୍ନ ଆଉ ତାହାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାର ପାଠ ଏହି ମାଟିରୁ ବିଲୀନ ଆଉ ନିଶ୍ଚିହ୍ନ ହୋଇଯାଉଛି । ଏହି ତୀବ୍ର ଶାଣିତ ଯାତନାର ମର୍ମଭେଦୀ ବ୍ୟର୍ଥତା ଓ ଶୂନ୍ୟତାକୁ ଆଉ ଶଲ୍ୟବିଦ୍ଧ କ୍ଷତାକ୍ତ ରକ୍ତସ୍ରାବୀ ଯନ୍ତ୍ରଣାକୁ ଅନୁଭବ କରିବାପାଇଁ ସମସ୍ତ ସ୍ପର୍ଶାତୁର କ୍ଷମତା ଏ ଜାତି କେଉଁ କାଳୁ ହରାଇ ବସିଛି ।



ଓଡ଼ିଶାର ଅପରାଜେୟ ସାମ୍ରାଜ୍ୟ ଏହି ବାରବାଟୀ ଦୁର୍ଗରୁ ପ୍ରାୟ ୧୦୦୦ସାଲରୁ ଆରମ୍ଭ କରି କେଶରୀ, ଗଙ୍ଗ,ସୂର୍ଯ୍ୟବଂଶୀ ଆଉ ଅବଶେଷରେ ମୁକୁନ୍ଦ ଦେବଙ୍କର ପରାଭୂତ ଶାସନପରେ, ୧୫୬୮ ସାଲ୍‌ରେ ଏହି ମାଟିରୁ ଓଡ଼ିଶାର ସ୍ୱାଧୀନତା ରବି ଅସ୍ତମିତ ହୋଇଗଲେ । ମଧୁସୂଦନଙ୍କର ଯୁଗାନ୍ତକାରୀ ଅଭ୍ୟୁଦୟ ପରେ ଓଡ଼ିଶାର ଦ୍ୱିତୀୟ ବାରବାଟୀ ଦୁର୍ଗ, 'ମଧୁସ୍ମୃତି'ର ୧୮୯୨ରେ ସ୍ଥାପନା ପରେ ଏହିଠାରୁ ତାହାଙ୍କର ଐକାନ୍ତିକ ପ୍ରଚେଷ୍ଟାରେ ବ୍ରିଟିଶର ଶ୍ୱେତ ସାମ୍ରାଜ୍ୟବାଦ ଓ ଭାରତୀୟ ମାଟିଆ ସାମ୍ରାଜ୍ୟବାଦ ବିରୁଦ୍ଧରେ ସମ୍ପ୍ରସାରିତ ଆଲୋଡ଼ନ ଓ ସଂଗ୍ରାମ ଫଳରେ ସ୍ୱଦେଶୀ ଶିକ୍ଷାୟନ ସହିତ ସୁଦୀର୍ଘ ଚାରିଶହ

ବର୍ଷର ଅନ୍ତରାଳରେ ଓଡ଼ିଆ ଅସ୍ମିତାର କୀର୍ତ୍ତିସ୍ତମ୍ଭ ଦେଶର ପ୍ରଥମ ଭାଷାଭିତ୍ତିକପ୍ରଦେଶ ଓଡ଼ିଶାର ସ୍ଥାପନା ହୋଇଥିଲା । ମଧୁସୂଦନଙ୍କର ବଡ଼ଲାଟ କର୍ଜନଙ୍କର ସହିତ ୧୮.୧୦.୧୯୦୦ରେ ସିମ୍ଲା, ୧୬.୧୦.୧୯୦୦ରେ ପୁରୀ ପରେ ଆଉ ବହୁବାର କଲିକତା ଓ ଅନ୍ୟସ୍ଥାନରେ ସାକ୍ଷାତ ପରେ ଯେଉଁ କର୍ଜନ-ରିସ୍‌ଲେ ସାର୍କୁଲାର ପ୍ରସାର ହୋଇଥିଲା, ତାହାରି ମାଧ୍ୟମରେ ପୂର୍ବରୁ ଶୀର୍ଷକାୟ ଓଡ଼ିଶା ଡିଭିଜନ ସହିତ ପଶ୍ଚିମ ଓ ଉତ୍ତରଖଣ୍ଡର ଓଡ଼ିଆଭାଷା ଅଞ୍ଚଳ ୧୬.୧୦.୧୯୦୫ରେ ଆଉ ମାନ୍ଦ୍ରାସ ପ୍ରେସିଡେନ୍ସୀରୁ ବିଭାଜିତ ବିଚ୍ଛିନ୍ନ ଅଞ୍ଚଳ ୧.୪.୧୯୩୬ରେ ଓଡ଼ିଶା ସହିତ ମିଶ୍ରଣ ହୋଇଥିଲା । ଓଡ଼ିଶାରେ ଦଶମ ଶତାବ୍ଦୀରେ ଯଯାତୀ କେଶରୀଙ୍କ ଦ୍ୱାରା ପଶ୍ଚିମାଞ୍ଚଳ ଏବଂ ଦ୍ୱାଦଶ ଶତାବ୍ଦୀରେ ଚୋଡ଼ଗଙ୍ଗଙ୍କ ଦ୍ୱାରା ଦକ୍ଷିଣାଞ୍ଚଳ ମିଶ୍ରଣ ପରେ ମଧୁସୂଦନ, ଦ୍ୱିତୀୟ ଦୁର୍ଗ ବାରବାଟୀ ମଧୁସ୍ମୃତିରୁ ଏହି ସମସ୍ତ ସାଫଲ୍ୟ ଓ ଅସାମାନ୍ୟ ଉପଲବ୍ଧି ଲାଭ କରିଥିଲେ । ଏଣୁ ସେ ଥିଲେ ଏ ଜାତିର ଅନ୍ୟତମ ଖାରବେଳ ଯେ ଏକ ବିରାଟ, ବିରାଟ ଶୂନ୍ୟତାର ପରିଧି ମଧ୍ୟରୁ ପ୍ରଥମ ଭାଷାଭିତ୍ତିକ ରାଜ୍ୟ ଓଡ଼ିଶାର ସ୍ଥାପନା କରିଥିଲେ ।

ମଧୁସୂଦନ ତାଙ୍କର ଯୁଗାନ୍ତକାରୀ ଅଭୀପ୍ସା ଆଉ ଅଦମ୍ୟ ପ୍ରଚେଷ୍ଟା, ପ୍ରଗାଢ଼ ଅଭିନିବେଶ ମଧ୍ୟରେ ଯେଉଁ ଅଞ୍ଚଳର ମିଶ୍ରଣ କରିଥିଲେ ତାହାର ଆୟତନ ବର୍ତ୍ତମାନ ୩୦ଟି ଜିଲ୍ଲାର ଅର୍ଦ୍ଧେକ ଅର୍ଥାତ ୧୫ଗୋଟି ଜିଲ୍ଲା ଅଟେ । ଅନ୍ୟ ଅର୍ଥରେ ଅବିଭକ୍ତ ୧୩ଟି ଜିଲ୍ଲାରୁ ୭ଗୋଟି ଅବିଭକ୍ତ ଜିଲ୍ଲାର ସମସ୍ତ ଭୂମି ଭାଗ, ଜଳ, ଖଣି, ଅରଣ୍ୟ ତଥା ସମସ୍ତ ପ୍ରାକୃତିକ ସମ୍ପଦକୁ ସେ ସମ୍ମିଳିତ କରିଥିଲେ । ଅନ୍ୟ ଅର୍ଥରେ ଆଜି ଓଡ଼ିଶା ସରକାରଙ୍କର ମୋଟ ରାଜସ୍ୱ ବା ଆୟର ଅର୍ଦ୍ଧେକ ବା ତୃତୀୟାଂଶ ମଧୁସୂଦନ ଓଡ଼ିଶା ସରକାରଙ୍କୁ ଅର୍ପଣ କରୁଛନ୍ତି । ପୂର୍ବରୁ ଯେଉଁ କୋରାପୁଟ ଜିଲ୍ଲାର ନାଲ୍‌କୋ ଅଥବା ସୁନ୍ଦରଗଡ଼ ଜିଲ୍ଲାର ରାଉରକେଲାରେ ଆଜି ଇସ୍ପାତ କାରଖାନା ଆଜି ପ୍ରତିଷ୍ଠିତ







ହୋଇଛି, ଏହି ଜିଲ୍ଲାମାନଙ୍କୁ ମଧୁସୂଦନ ଆଣିଥିବା ଖଣି ଯୋଗୁଁ ତାହା ସମ୍ଭବ ହୋଇଛି । ଏହି ଶିଳ୍ପମାନଙ୍କରୁ ମିଳୁଥିବା ବିପୁଳ ଲାଭାଂଶର କିଛି ଅଂଶ ମଧୁସ୍ମୃତିର ପୁନରୁଦ୍ଧାର ଓ ଜାତୀୟ ସ୍ମାରକୀ ସ୍ଥାପନା ପାଇଁ ବିନିଯୋଗ ହେଉ । ବିଗତ ଦୁଇ-ତିନିବର୍ଷରେ ମଧୁସୂଦନ ଆଣିଥିବା ଜମିକୁ ଶିଳ୍ପ ସ୍ଥାପନାପାଇଁ ବିକ୍ରି କିମ୍ୱା ଖଣି ଲିଜ୍‌ଦେଇ ଯେଉଁ ପ୍ରଚୁର ଅର୍ଥ ସରକାର ପାଉଛନ୍ତି, ତାହାର କିଛିଅଂଶ ମଧୁସ୍ମୃତିର ସ୍ମାରକୀ ଲାଗି ବିନିଯୋଗ ହେଉ । ମଧୁସୂଦନ ଆଣିଥିବା ସମସ୍ତ ପ୍ରାକୃତିକ ଖଣିଜ ସମ୍ପତ୍ତିକୁ ସେ ପ୍ରତିବଦ୍ଧତାର ଦାନ ହିସାବରେ ଓଡ଼ିଆ ଜାତି ହସ୍ତରେ ଅର୍ପଣ କରି ସୀମିତ ପରିମାଣରେ ବିନିଯୋଗ କରିବା ପାଇଁ ଆହ୍ୱାନ ଦେଇଥିଲେ । ମାତ୍ର ତାହାର ଏକାନ୍ତ ଉଲ୍ଲଂଘନ ଆଜିର ସ୍ଥିତି ଓ ଅବସ୍ଥା ।

ମଧୁସୂଦନ ନଥିଲେ ଓଡ଼ିଶା ନଥାନ୍ତା । ଅନ୍ୟ ଅର୍ଥରେ ଆଜି ଆମର ଏହି ସମସ୍ତ ଜିଲ୍ଲାର ସହର ମାନଙ୍କରେ ୨/୩ଭାଗ ୩/୪ଜଣ ଅଣ-ଓଡ଼ିଆମାନେ ବାସ କରୁଥାନ୍ତେ, ଆଉ ବଳକା ଓଡ଼ିଆମାନେ ବିଚ୍ଛିନ୍ନ ଓଡ଼ିଶାରେ ବାସ କରୁଥିବା ଓଡ଼ିଆଙ୍କ ପରି ଅତ୍ୟନ୍ତ ଶୋଷିତ ଓ ନିର୍ଯାତିତ ହୋଇ ଦୟନୀୟ ସ୍ଥିତିରେ ବାସ କରୁଥାନ୍ତେ । ଏତିକି ସଚେତନତା ଓଡ଼ିଶାବାସୀଙ୍କର ତଥା ସରକାରଙ୍କର ମଧୁସୂଦନଙ୍କ ପ୍ରତି ନାହିଁ । ତେଣୁ ଓଡ଼ିଶାର ଦ୍ୱିତୀୟ ବାରବାଟୀ ଦୁର୍ଗ 'ମଧୁସ୍ମୃତି' ଅବଲୁପ୍ତିର ଚରମ ପର୍ଯ୍ୟାୟରେ ପହଞ୍ଚିଛି ।

ଓଡ଼ିଶାର ସୁବିଶାଳ କଟକ ସହରରେ ସରକାରଙ୍କର ଓଡ଼ିଶାର ଅନ୍ୟ ସହରମାନଙ୍କ ପରି ମହିଳା କଲେଜ ସ୍ଥାପନା ପରମକର୍ତ୍ତବ୍ୟ ଥିଲା । ଶୈଳବାଳା ମଧୁବାବୁଙ୍କର ଗୃହ'ମଧୁସ୍ମୃତି'କୁ ଯେତେବେଳେ ଦାନସୂତ୍ରରେ ୧୯୫୨ସାଲରେ ଓଡ଼ିଶା ସରକାରଙ୍କୁ ଦେଲେ, ସେତେବେଳେ ଦାନପତ୍ରରେ ଲେଖିଥିଲେ ଯେ,ଏହି ଶୈଳବାଳା କଲେଜର ଯଦି ଅଧିକ ଅଭିବୃଦ୍ଧି ଘଟେ, ଏହାକୁ ଅନ୍ୟତ୍ର ସ୍ଥାନାନ୍ତର କରି ମଧୁସ୍ମୃତିକୁ ମଧୁସ୍ମାରକୀ ରୂପେ ବ୍ୟବହାର କରାଯାଉ । ଏହି ସର୍ତ୍ତର ଚରମ ଉଲ୍ଲଂଘନ କରାଯାଇଛି । ଏହି ତଥ୍ୟ ୧୯୯୮ ସାଲ୍‌ରେ ମଧୁସୂଦନଙ୍କର ୧୫୦ତମ ଜୟନ୍ତୀ ବର୍ଷରେ ସରକାରଙ୍କର ଦୃଷ୍ଟି ଆକର୍ଷଣ କରାଗଲା ଆଉ ୧୯୯୯ସାଲ୍ ତଥା ୨୦୦୨ ସାଲ୍‌ରେ ସିଦ୍ଧାନ୍ତ ନିଆଗଲା ଯେ, ଶୈଳବାଳା କଲେଜକୁ ସଂଲଗ୍ନ କରି ଏକ ସ୍ୱତନ୍ତ୍ର ପ୍ରାସାଦ ନିର୍ମିତ ହେବ, ଯେଉଁଠାକୁ ମହିଳା କଲେଜର ପରିସରକୁ ସ୍ଥାନାନ୍ତରିତ ହୋଇ ମଧୁସ୍ମୃତି ସଂସ୍କୃତି ବିଭାଗ ଅଧିନରେ ଜାତୀୟ ସ୍ମାରକୀ ଓ ସଂଗ୍ରହାଳୟ ରୂପେ ପରିଣତ କରାହେବ । ମାତ୍ର ସୁଦୀର୍ଘ ଛଅବର୍ଷ ବିତିଯାଇଥିଲେ ମଧ୍ୟ ଏହାର କାର୍ଯ୍ୟାରମ୍ଭ ହୋଇନାହିଁ । ମଧୁସ୍ମୃତିକୁ ଦାନସୂତ୍ରରେ ଦିଆଯାଇ ଥିବାରୁ ୧୯୫୨ସାଲ୍‌ରୁ ଆଜିପର୍ଯ୍ୟନ୍ତ ପ୍ରାୟ ୫୫ବର୍ଷ କାଳ ଧରି ଶୈଳବାଳା କଲେଜ, ଏହି ଠାରେ କାର୍ଯ୍ୟ କରୁଅଛି । ଯଦି ଭଡ଼ାସୂତ୍ରରେ ଏହି କୋଠାକୁ ନିଆଯାଇଥାନ୍ତା, ସରକାରଙ୍କୁ ଅନ୍ୟୂନ ଦଶକୋଟି ଟଙ୍କା ଭଡ଼ାସୂତ୍ରରେ ଦେବାକୁ ପଡ଼ିଥାନ୍ତା । ସରକାର ମଧୁସୂଦନଙ୍କୁ ବୋଧହୁଏ ଓଡ଼ିଶାର ଦଧିଚୀ ବୋଲି ବିବେଚନା କରନ୍ତି । ମଧୁସୂଦନ ଜାତିପାଇଁ ସର୍ବସ୍ୱ ଦାନକରି ମୃତ୍ୟୁବେଳକୁ ନିଜେ ନିଃସ୍ୱ ଆଉ ଦେବାଳିଆ ହୋଇଯାଇଥିଲେ ମଧ୍ୟ ମୃତ୍ୟୁପରେ ତାହାଙ୍କର କୋଠାର କାନ୍ଥ, ଛାତ, ପରିସରର ସମସ୍ତ ଭୂମିଭାଗ ଦେଶସେବାରେ ନିୟୋଜିତ ହୋଇ ରହିଛି । ଏକ ମହାନ୍ ଜାତିର ତ୍ରାଣକର୍ତ୍ତା, ତାହାଙ୍କର ନିଜସ୍ୱ

ସ୍ମୃତିରକ୍ଷା ପାଇଁ ସୂଚ୍ୟାଗ୍ର ମେଦିନୀ ମଧ୍ୟ ବିନିଯୋଗ ହୋଇପାରୁନାହିଁ । ଏହାଠାରୁ ଅଧିକ ଅକୃତଜ୍ଞତାର ମର୍ମନ୍ତୁଦ ସ୍ଥିତି କ'ଣ ବା ହୋଇପାରେ ।

ମଧୁସୂଦନ ଥିଲେ ଅର୍ଦ୍ଧଶତାବ୍ଦୀଧରି ଓଡ଼ିଆ ଜାତିର ଅକଳ୍ପନୀୟ ଉନ୍ମେଷର ମୂର୍ତ୍ତିମନ୍ତ ବିଗ୍ରହ, ଆଉ ଓଡ଼ିଶାର ଦ୍ୱିତୀୟ ବାରବାଟୀ ଦୁର୍ଗ 'ମଧୁସ୍ମୃତି'ର ପ୍ରତି ଭୂମିଖଣ୍ଡ ବହନ କରେ ସ୍ୱତନ୍ତ୍ର ଓଡ଼ିଶା ସ୍ଥାପନାର ପରମ ଆଲେଖ୍ୟ । କୁହାଯାଏ, ତାହାଙ୍କର ଟେନିସ କୋର୍ଟ ମଧ୍ୟ ବହୁ ପରିମାଣରେ ଓଡ଼ିଶା ଗଠନ ପାଇଁ ଦାୟୀ । ହେଲେ ଏସବୁ ରହିଯାଇଛି ପ୍ରଦେଶାଧିକାର ନିଷିଦ୍ଧାଞ୍ଚଳରେ ।

ଶୈଳବାଳାଙ୍କ ଦାନ ପତ୍ରରେ, ମଧୁସୂଦନ ସାରାଜୀବନ ଧରି ବ୍ୟବହାର କରୁଥିବା ଉପର ଦୁଇଟି କକ୍ଷରେ ତାହାଙ୍କର ବ୍ୟବହୃତ ପଦାର୍ଥମାନଙ୍କ ଦ୍ୱାରା ସଜ୍ଜିତ ହୋଇ ଚିରକାଳ ତିଷ୍ଠି ରହିବ ବୋଲି ସୂଚିତ ହୋଇଛି । ମାତ୍ର ଗତବର୍ଷ ୧୯୦୭ସାଲ୍‌ରେ ସ୍ଥାପିତ ମଧୁସୂଦନ ସଂଗ୍ରହାଳୟ ଏହାର ଅନୁରୂପ ଭାବେ ପ୍ରତିଷ୍ଠିତ ନହୋଇ ତାଙ୍କର ସ୍ମୃତିକୁ ପ୍ରତିହତ କରାଯାଇଛି । ମୁଁ ଜାଣେନା ତାହାଙ୍କର କୀର୍ତ୍ତିସମ୍ଭାରର ଆଲେଖ୍ୟ କିପରି ଉପସ୍ଥାପନା କରାଯିବ । ତାହାଙ୍କର ଭାବବିହ୍ୱଳ ଆବେଦନରେ ଭାଙ୍ଗି ଅଜାଡ଼ି ହୋଇପଡ଼ି ନିଶ୍ଚିହ୍ନ ସ୍ଥିତିରେ ଥିବା ଓଡ଼ିଶାର ପରମ ଭାସ୍କର୍ଯ୍ୟର ପରାକାଷ୍ଠା ବହନ କରୁଥିବା କୋଣାର୍କ ଓ ଭୁବନେଶ୍ୱରର ବହୁ କାରୁକାର୍ଯ୍ୟ ସମ୍ବଳିତ ମନ୍ଦିରରାଶି ଲର୍ଡ୍ କର୍ଜନଙ୍କର ନିର୍ଦ୍ଦେଶନାରେ ବହୁସମ୍ବଳ ବିନିଯୋଗରେ ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ସଂରକ୍ଷିତ ଆଉ ପୁନଃନିର୍ମିତ ହୋଇପାରିଲା । ମଧୁସୂଦନଙ୍କର ଏକାନ୍ତ ପ୍ରଚେଷ୍ଟାରେ ୧୮୯୫-୧୯୦୦ସାଲ୍ ମଧ୍ୟରେ ଓଡ଼ିଶାର ସୁଦୀର୍ଘ ଉପକୂଳ ରେଳପଥ ଦ୍ୱାରା ସଂଯୁକ୍ତ ହୋଇପାରିଥିଲା ।

ଜାତିର ଜନକ ମହାତ୍ମାଗାନ୍ଧୀଙ୍କର ପଦରଜରେ ପବିତ୍ରିତ ହୋଇଥିଲା ମଧୁସ୍ମୃତି ୧୯୨୫ ଆଉ ୧୯୨୭ସାଲ୍‌ରେ । ସେହିଠାରେ ସେ ଆପଣାର ମାର୍ଗଦର୍ଶକ ମଧୁସୂଦନଙ୍କଠାରୁ ପରମ ପ୍ରଜ୍ଞାର ବାଣୀ ଗ୍ରହଣ କରି ମଧୁସୂଦନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ରୂପରେ ଅନେକ ନିବନ୍ଧ ରଚନା କରିଥିଲେ । ମାତ୍ର ଏହି







ମହାନ୍ ଜାତୀୟତାର ତୀର୍ଥଭୂମି ରହିଯାଇଛି ପ୍ରଦେଶାଧିକାରଙ୍କ ନିଷିଦ୍ଧାଞ୍ଚଳରେ ।

ମଧୁସୂଦନ ଥିଲେ ଭାରତୀୟ ପାର୍ଲାମେଣ୍ଟର ୧୯୧୩ରୁ ୧୯୧୬ସାଲ୍ ମଧ୍ୟରେ ପ୍ରଥମ ଓଡ଼ିଆ ସାଂସଦ, ଯାହାଙ୍କର ପ୍ରଚଣ୍ଡ ଜ୍ୱାଳାମୟୀ ଭାଷଣ ପାର୍ଲାମେଣ୍ଟର ପରିସରକୁ ପ୍ରକମ୍ପିତ କରୁଥିଲା । ସେ ମଧ୍ୟ ଥିଲେ ପ୍ରଥମ ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶର ପ୍ରତିଷ୍ଠାତା । ତାହାଙ୍କର ପ୍ରତିକୃତି କିମ୍ବା ପ୍ରତିମୂର୍ତ୍ତି ପାର୍ଲାମେଣ୍ଟରେ ସ୍ଥାପନା ଲାଗି ଓଡ଼ିଶା ସରକାରଙ୍କର ଅନାଗ୍ରହତା କେବଳ ଯନ୍ତ୍ରଣାଦାୟକ ନୁହେଁ, ଅକୃତଜ୍ଞତାର ଏକ ନିଦର୍ଶନ ମଧ୍ୟ ।

ମହାତ୍ମାଗାନ୍ଧୀଙ୍କର ମାର୍ଗଦର୍ଶକ ମଧୁସୂଦନଙ୍କର ସମାଧି ହେଉଛି ଓଡ଼ିଶା ପାଇଁ ଦ୍ୱିତୀୟ ରାଜଘାଟ । ବିସ୍ତାରିତ ମହାନଦୀର ଧାରରେ ଅବସ୍ଥିତ ମଧୁସୂଦନଙ୍କର ପୁଣ୍ୟ ସମାଧି କଳାତ୍ମକ ନିର୍ମାଣ ଦ୍ୱାରା ସୁଶୋଭିତ ଆଉ ସୁସଜ୍ଜିତ ହୋଇ ଏକ ଗରିମାମୟ କୀର୍ତ୍ତିଶାଳିନୀ ପୀଠର ମାନ୍ୟତା ଲାଭ କରୁ, ଏହାହିଁ ଏକାନ୍ତ କାମନା ।

ହେ ପାଠକବର୍ଗ । ଓଡ଼ିଶାର ଦ୍ୱିତୀୟ ବାରବାଟୀ ଦୁର୍ଗ-ମଧୁସ୍ମୃତିରେ ମଧୁସୂଦନଙ୍କର ମହିମାନ୍ୱିତ ଜୀବନର ବିସ୍ତାରିତ ଘଟଣାବହୁଳ ଜୀବନର ଉଦ୍ଦୀପିତ ବିବରଣୀ, ପ୍ରଖ୍ୟାତ ଉତ୍କଳ ଦୀପିକା ପତ୍ରିକାର ପ୍ରାୟ ୩୦୦୦ପୃଷ୍ଠାର ଅବରଣ ମଧ୍ୟରେ ଉତ୍କୀର୍ଣ୍ଣ ହୋଇରହିଛି, ଯାହା ନିରବଧି କାଳର ପ୍ରବାହରେ ଓଡ଼ିଆ ଜାତିକୁ ଅନୁପ୍ରେରଣା ଓ ମାର୍ଗଦର୍ଶନ ପ୍ରଦାନ କରିଚାଲିଥିବ ।

*କାରାରୁଦ୍ଧ ମଧୁସୂଦନ*

ମଧୁସ୍ମୃତିରେ ମଧୁସୂଦନଙ୍କର ସ୍ମୃତି କେବଳ ସ୍ମୃତି ନୁହେଁ, ମଧୁସୂଦନ ସ୍ୱୟଂ ଏଠାରେ କାରାରୁଦ୍ଧ । ମଧୁସୂଦନଙ୍କର ସୁଦୀର୍ଘ ବର୍ଷ ଧରି ସଞ୍ଚାଳିତ ସଂଗ୍ରାମର କ୍ଷେତ୍ର, ଯାହାର ରେଣୁ ରେଣୁ ଭୂମି ତାହାଙ୍କର ପାବନ ପଦପାତରେ ପବିତ୍ରିତ ହୋଇଥିଲା, ଯେଉଁ ଦେଶ ପାଇଁ ନିଃସ୍ୱହୋଇ ତାହାଙ୍କର ଶେଷଶଯ୍ୟା ଯେଉଁଠାରେ ରଚନା କରିଥିଲେ, ତାହା ଆଜି ମଧ୍ୟ କାରାବାସରେ ବିଡ଼ମ୍ବିତ । ତାହାଙ୍କର ପ୍ରଥମ ମାର୍ବଲ ପ୍ରସ୍ତରର ଅନନ୍ୟ ପ୍ରତିମୂର୍ତ୍ତି, ଯାହା ତାହାଙ୍କର ଜୀବନ୍ତ ଉପସ୍ଥିତିର ଭ୍ରମ ସୃଷ୍ଟିକରେ ତାହାମଧ୍ୟ ରହିଛି ନିଷିଦ୍ଧ ଅଞ୍ଚଳରେ ସଂଗୋପନରେ, ଯାହାକୁ ଅବଲୋକନ କରିବା ଆଉ ଶ୍ରଦ୍ଧାଞ୍ଜାପନ କରିବା ଆଜି ମଧ୍ୟ ଅପରାଧ ରୂପେ ଗଣ୍ୟ ହୁଏ, ସେଠାରେ ସେ ହୋଇଛନ୍ତି ଅସ୍ପୃଶ୍ୟ ଆଉ କାରାରୁଦ୍ଧ ।

ଏହା ହିଁ ଓଡ଼ିଆ ଜାତିର ଚରମ ବିପର୍ଯ୍ୟୟ ।

ଏଣୁ ମଧୁସ୍ମୃତିରେ ମଧୁସୂଦନ ଜାତୀୟ ସ୍ମାରକୀ ସ୍ଥାପନା ଦେଶ ଓ ଜାତି ମଧ୍ୟରେ ଦୁର୍ବାର ଉନ୍ମାଦନା ଆଉ ଉଦ୍‌ବେଳନ ସୃଷ୍ଟିକରି ଏକ ନୂତନ କ୍ରାନ୍ତିକାରୀ ଯୁଗର ଅୟମାରମ୍ଭରେ ସହାୟକ ହେଉ ।

('ସମଦୃଷ୍ଟି'-୧-୧୫ ଜାନୁଆରୀ-୨୦୦୯)





# ଅର୍ଦ୍ଧ ସହସ୍ରାବ୍ଦୀର କାଳଜୟୀ କୀର୍ତ୍ତିମାନ ଶିଳ୍ପୀ ବିପ୍ରଚରଣ

ନିଦାରୁଣ କାଳ ସର୍ବଗ୍ରାସୀ । ବହୁ ଯୁଗପୁରୁଷ କରାଳଗ୍ରାସରେ ଅବଲୁପ୍ତ । ମାତ୍ର ଯାହାଙ୍କର କାଳଜୟୀ କୀର୍ତ୍ତି ଓଡ଼ିଶାର ବକ୍ଷରେ ଅନ୍ତତଃ ଅର୍ଦ୍ଧସହସ୍ରାବ୍ଦୀ ଧରି ରହିବ କୀର୍ତ୍ତିମାନ, ଭାସ୍କର ଆଉ ଅମ୍ଳାନ; ସେ ହେଉଛନ୍ତି ପ୍ରଥମ ଧର୍ମପଦ ପୁରସ୍କାରବିଜେତା ଗରିମାମୟ ଦୀପ୍ତିମାନ ଶିଳ୍ପୀ ବିପ୍ରଚରଣ ମହାନ୍ତି । ପ୍ରାୟ ୧୯୨୨ ସାଲରେ ପ୍ରଖ୍ୟାତ ଚିତ୍ରଶିଳ୍ପୀ ବିମ୍ବାଧର ବର୍ମାଙ୍କର ଆଶୀର୍ବାଦପ୍ରାପ୍ତ ତାହାଙ୍କର ଜଣେ ଉତ୍ତରଦାୟାଦ ରୂପେ ନାନପୁରରେ ଜନ୍ମଗ୍ରହଣ କରିଥିବା ବିପ୍ରଚରଣ ନିଜସ୍ୱ ପ୍ରତିଭାର ଅନ୍ତର୍ନିହିତ ପ୍ରତିଭାର ସ୍ଫୁରଣରେ ଆବାଲ୍ୟରୁ ମୂର୍ତ୍ତିକାର ରହି ୧୯୩୨-୩୩ ସାଲରେ କିଶୋର ବୟସରେ, ମଧୁସ୍ମୃତିରେ ସ୍ଥାପିତ କଳାକେନ୍ଦ୍ରରେ ମଧୁସୂଦନ ଦାସଙ୍କର ମାର୍ଗଦର୍ଶନରେ ପ୍ଲାଷ୍ଟର ଅଫ୍ ପ୍ୟାରିସ୍‌ର ମୂର୍ତ୍ତି ନିର୍ମାଣରେ ଅନନ୍ୟ ପାରିଦର୍ଶିତା ପ୍ରାପ୍ତ ହୋଇଥିଲେ ।

ମଧୁସୂଦନଙ୍କ ନିର୍ଦ୍ଦେଶକ୍ରମେ ୧୯୪୭ସାଲରେ କଲିକତାର ଆର୍ଟକଲେଜରେ ଜଣେ ତେଜସ୍ୱୀ ଛାତ୍ରରୂପେ ଅବସ୍ଥାନ ରହି ଦଙ୍ଗା ପ୍ରପୀଡ଼ିତ କଲିକତାରେ ମହାତ୍ମାଗାନ୍ଧୀଙ୍କର ଅବିସ୍ମରଣୀୟ ପରିଦର୍ଶନ ବେଳେ ଆଉ ବିକ୍ଷୁବ୍ଧ ଓ ଅଶାନ୍ତ ନୂଆଖାଲି ପଦଯାତ୍ରାବେଳେ ସହଯାତ୍ରୀ ରହି ବିପ୍ରଚରଣ, ମହାତ୍ମାଗାନ୍ଧୀଙ୍କୁ ନିରନ୍ତର ସେବା ପ୍ରଦାନ କରି ଆସିଥିଲେ । ଏହି ଦୁର୍ଲଭ ଅଭିଜ୍ଞତାର ଫଳଶ୍ରୁତି ସ୍ୱରୂପ ସେ ପ୍ରଗାଢ଼ କଳାବିନ୍ୟାସର ନୈପୁଣ୍ୟ ଆଉ ପରାକାଷ୍ଠା ଘେନି ପୁରୀର ବେଳାଭୂମିରେ ଏହି ମହିମାନ୍ୱିତ ପଦଯାତ୍ରାରେ ରତ ମହାତ୍ମାଗାନ୍ଧୀଙ୍କର ଅନବଦ୍ୟ ପ୍ରତିମୂର୍ତ୍ତି ସ୍ଥାପିତ କରିଛନ୍ତି । ଯାହା ତାଙ୍କର ସର୍ବଶ୍ରେଷ୍ଠ ଯୁଗାନ୍ତକାରୀ ସୃଷ୍ଟି ରୂପେ ଆଖ୍ୟାୟିତ ।

ସେହି ପ୍ରାକ୍ତନ ସଂଘର୍ଷମୟ ଯୁଗରେ ଜନ୍ମଗ୍ରହଣ କରିଥିବା ବିପ୍ରଚରଣ ତାଙ୍କର ସୁଦୀର୍ଘ ଘଟଣାବହୁଳ ଜୀବନକାଳ ମଧ୍ୟରେ ପ୍ରତ୍ୟକ୍ଷଭାବେ ମୁହାଁମୁହିଁ ଭେଟିଥିବା ଜଣେ ଦୀପ୍ତିମାନ ପୁରୁଷ ମହାତ୍ମାଗାନ୍ଧୀ ଆଉ ମଧୁସୁଦନ କେବଳ ନୁହଁନ୍ତି; ନେତାଜୀ ସୁଭାଷ ବୋଷ, ପଣ୍ଡିତ ନେହେରୁ, ଉତ୍କଳମଣି ଗୋପବନ୍ଧୁ,ପାରଳା ମହାରାଜାଙ୍କଠାରୁ ଆରମ୍ଭକରି ଅନତିକ୍ରମ୍ୟ ଉତ୍କଳ ନୃତ୍ୟଶିଳ୍ପୀ କେଳୁଚରଣଙ୍କ ପର୍ଯ୍ୟନ୍ତ ଯେଉଁ ଜୀବନ୍ତ ପ୍ରତିମୂର୍ତ୍ତି ନିର୍ମାଣ କରିଛନ୍ତି, ତାହା ପ୍ରାଣବନ୍ତ ଜୀବନ୍ୟାସର





ଭ୍ରମ ଧ୍ୱଂଷ କରିଥାଏ । ଏହି ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଗାଢ଼ ଅଭିଜ୍ଞତା ହିଁ ତାହାଙ୍କୁ ଏକ ପ୍ରଖ୍ୟାତ ଚିରନ୍ତନ ମାନବବାଦୀ ଶିଳ୍ପୀରୂପେ ପ୍ରତିଷ୍ଠିତ କରିଛି । ଏହାଛଡ଼ା ଦୁର୍ଦ୍ଦାନ୍ତ ସଂଗ୍ରାମୀ ଅଶ୍ୱାରୋହୀ ସୁରେନ୍ଦ୍ର ସାଏ, ବକ୍ସି ଜଗବନ୍ଧୁ, ଭକ୍ତଦାସିଆ ଆଉ ସାନ୍ତାଳି ଲିପିକାର ରଘୁନାଥ ମୁର୍ମୁଙ୍କର ମୂର୍ତ୍ତି ନିର୍ମାଣ ତାହାଙ୍କୁ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ମୂର୍ତ୍ତିକାର ଭାବରେ ମାନ୍ୟତା ପ୍ରଦାନ କରିଛି । ଭାରତୀୟ ପାର୍ଲାମେଣ୍ଟରେ ବୀରସଂଗ୍ରାମୀ ବିର୍ସା ମୁଣ୍ଡାଙ୍କର ପ୍ରଖର ଶୌର୍ଯ୍ୟ ଓ ଔଜ୍ଜ୍ୱଲ୍ୟ ବହନ କରୁଥିବା ପ୍ରତିମୂର୍ତ୍ତି ପାଇଁ ବିପ୍ରଚରଣ ମହାମାନ୍ୟ ରାଷ୍ଟ୍ରପତିଙ୍କର ହସ୍ତରୁ ଉତ୍କର୍ଷତାର ସମ୍ମାନରେ ସମ୍ବର୍ଦ୍ଧିତ ହୋଇଥିଲେ । କଲିକତା ଆର୍ଟ କଲେଜରେ ତଥା ମାଡ୍ରାସର କଳା ପ୍ରତିଷ୍ଠାନରେ ସ୍ୱତନ୍ତ୍ରଭାବେ ବ୍ରୋଞ୍ଜ ମୂର୍ତ୍ତିକଳାରେ ପ୍ରଶିକ୍ଷିତ ହୋଇ ବିପ୍ରଚରଣ କଲିକତାକୁ ତାଙ୍କର କର୍ମଭୂମିରୂପେ ବାଛି ନେଇଥିଲେ ।

ପରେ ମଧୁସ୍ମୃତି ଠାରେ ଦେଶପ୍ରାଣ ମଧୁସୂଦନଙ୍କର ପୂର୍ଣ୍ଣାଙ୍ଗ ପ୍ରଥମ ପ୍ରତିମୂର୍ତ୍ତି ନିର୍ମାଣ ପାଇଁ ୧୯୫୨ ସାଲରେ ଓଡ଼ିଶା ଫେରି ଆସି ଏହି ଅନବଦ୍ୟ ପ୍ରତିମୂର୍ତ୍ତିର ଉଦ୍‌ଘାଟକ ପଣ୍ଡିତ ନେହୁରୁଙ୍କର ଦ୍ୱାରା ଉଚ୍ଛ୍ୱସିତଭାବେ ଅଭିନନ୍ଦିତ ହୋଇଥିଲେ । ଖଲ୍ଲିକୋଟ ଆର୍ଟ କଲେଜର ଅଧ୍ୟକ୍ଷ ରୂପେ ବିପ୍ରଚରଣ ଓଡ଼ିଶାର ବ୍ରୋଞ୍ଜ ମୂର୍ତ୍ତିକଳାର ଏକ ସାମ୍ରାଜ୍ୟ ସୃଷ୍ଟି କରିଥିଲେ । ପ୍ରକୃତରେ ୧୯୬୨ ସାଲରେ ଭୁବନେଶ୍ୱରରେ ଅଧିଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନରେ ବିପ୍ରଚରଣ କୀର୍ତ୍ତିମାଳିନୀ ଭୁବନେଶ୍ୱରକୁ ତଥା ସଭାମଞ୍ଚକୁ ବର୍ଣ୍ଣାଢ଼୍ୟ ଅଳକାପୁରୀର ସାଜସଜ୍ଜାରେ ବିମଣ୍ଡିତ କରିଥିଲେ ।

ପରିଣାମରେ ଭାରତର ବହୁ ଅଧିବେଶନରେ ଏହି କଳାପ୍ରାଣତାର ମହାନ ଦାୟିତ୍ୱ ବିପ୍ରଚରଣ କୃତିତ୍ୱର ସହ ନିର୍ବାହ କରିଥିଲେ । ଓଡ଼ିଶା ବିଧାନସଭାର ପରିସର, ରାଉରକେଲା, ଭୁବନେଶ୍ୱର, ପୁରୀ, ବ୍ରହ୍ମପୁର ଆଦି ସହରରେ ତାହାଙ୍କର ପ୍ରତିଷ୍ଠିତ ଅସଂଖ୍ୟ ପ୍ରତିମୂର୍ତ୍ତି ତାହାଙ୍କୁ କାଳକାଳ ଲାଗି ଚିରଞ୍ଜିବୀ କରି ରଖିଥିବ । ବିପ୍ରଚରଣଙ୍କର ଶେଷ ଅଭିଳାଷରୂପେ ତାହାଙ୍କର ଅନ୍ତିମ କୀର୍ତ୍ତିର ସନ୍ତକରୂପେ ତାହାଙ୍କର ଅଭ୍ରାନ୍ତ ମାର୍ଗଦର୍ଶକ ମଧୁସୂଦନଙ୍କର ପ୍ରଦୀପ୍ତମାନ ପ୍ରତିମୂର୍ତ୍ତି ୨୦୦୮ ସାଲ ସେପ୍ଟେମ୍ବର ମାସରେ ଶ୍ରୀକ୍ଷେତ୍ରରେ ପୁରୀ ପୌରସଦନ ପରିସରରେ ସ୍ଥାପିତ ହୋଇଥିଲା ।

ସ୍ୱାଧୀନତାର ପରବର୍ତ୍ତୀ ପ୍ରାୟ ସମସ୍ତ ପ୍ରଶାସନ ଆଉ ମନ୍ତ୍ରିମଣ୍ଡଳ ସେମାନଙ୍କର ସ୍ୱାର୍ଥସିଦ୍ଧି ଲାଗି ନିଜସ୍ୱ ଅଭିଳଷିତ ବ୍ୟକ୍ତିମାନଙ୍କର ପ୍ରତିମୂର୍ତ୍ତି ବିପ୍ରଚରଣଙ୍କ ଦ୍ୱାରା ନିର୍ମାଣ କରାଇଥିଲେ ମଧ୍ୟ ୧୯୯୩ ସାଲରେ ପ୍ରଥମ ଧର୍ମପଦ ସମ୍ମାନରେ ସମ୍ମାନିତ ଭାରତର ଜଣେ ମହିମାନ୍ୱିତ କୃତବିଦ୍ୟ ମୂର୍ତ୍ତିକାର ବିପ୍ରଚରଣଙ୍କୁ ପଦ୍ମଶ୍ରୀ ଉପାଧିରେ ଗରିମାମଣ୍ଡିତ କରିପାରିନଥିବା ପ୍ରକୃତରେ ଏକ ବିହ୍ୱଳିତ ଶୋକାର୍ତ୍ତ ଅଧ୍ୟାୟ ଥିଲା । ମାତ୍ର ବିପ୍ରଚରଣ ଥିଲେ ଏ ସମସ୍ତଙ୍କର ଉର୍ଦ୍ଧ୍ୱରେ । ପ୍ରଖର ମାନବବାଦୀ ମନ୍ତ୍ରରେ ଦୀକ୍ଷିତ ଏକ ସମୁଜ୍ଜ୍ୱଳ କଳାକାର, ଯାହାଙ୍କ ପାଇଁ ଅଜସ୍ର ଖ୍ୟାତି ତାହାଙ୍କର ପାଦତଳେ ଲୋଟି ପଡ଼ିଥିଲା । ସେ ଥିଲେ ଗଭୀର ଭାବେ ନିରାସକ୍ତ ପ୍ରଜ୍ଞା ପୁରୁଷ, ଯାହାଙ୍କର ଓଡ଼ିଶାର ବକ୍ଷରେ ସ୍ଥାପିତ ପ୍ରଗାଢ଼ କଳା ଭାସ୍କର୍ଯ୍ୟରେ ଉଭରିତ ଅସଂଖ୍ୟ କାଳଜୟୀ ପ୍ରତିମୂର୍ତ୍ତି ସଦା ଅମଳିନ ଜ୍ୟୋତିରେ ଝଲସି ଉଠୁଥିବ ।

('ସମଦୃଷ୍ଟି'-୧୬-୩୦ ସେପ୍ଟେମ୍ବର-୨୦୦୯)





# କାଳର କରାଳ ସ୍ରୋତରେ ଷଢ଼େଇକଳା ଆଉ ଖରସୁଆଁ

କାଳର କରାଳ ସ୍ରୋତରେ ଷଢ଼େଇକଳା ଆଉ ଖରସୁଆଁ ଆଜି ଏକ ବିପଦଶଙ୍କୁଳ ଆଉ ସଂଶୟ ବିଜଡ଼ିତ ପର୍ଯ୍ୟାୟରେ ଉପନୀତ । ଏକ ପ୍ରତିଶ୍ରୁତିବଦ୍ଧ ସଂକଳ୍ପ ଆଉ ଦୂରଦୃଷ୍ଟି ସମ୍ପନ୍ନ ପଦକ୍ଷେପ ଏବଂ ସର୍ବୋପରି ସମୟୋପଯୋଗୀ ସିଦ୍ଧାନ୍ତ ଗ୍ରହଣର ସଫଳ ରୂପାୟନ ହୁଏତ ଏହି ବିପଦଗ୍ରସ୍ତ ମୁହୂର୍ତ୍ତରେ କିଛି ମାର୍ଗଦର୍ଶନ କରିପାରେ । ବିଗତ ଜୁଲାଇ ଦଶତାରିଖରେ ଓଡ଼ିଶା ବିଧାନସଭାରେ ଏକ ସ୍ୱରରେ ଷଢ଼େଇକଳା ଓ ଖରସୁଆଁର ପୁନଃମିଶ୍ରଣ ଲାଗି ପ୍ରସ୍ତାବ ଗ୍ରହଣ କରିବା ସମୟରେ ଯେପରି ଏକ ଆଶାଲୋକର ସ୍ଫୁରଣ ଘଟିଥିଲା ।

ମାତ୍ର ଜୁଲାଇ ୨୫ତାରିଖରେ ପାର୍ଲାମେଣ୍ଟରେ ଝାଡ଼ଖଣ୍ଡ ବିଲ୍ ଉପସ୍ଥାପିତ ହେବାବେଳେ ଓଡ଼ିଶାର ପାର୍ଲାମେଣ୍ଟର ସଦସ୍ୟମାନେ ଯେପରି ଦ୍ୱିଧା ବିଜଡ଼ିତ ଆଉ କିଛି ସଦସ୍ୟ ସଂଶୟର ପରିଧିମଧ୍ୟରେ ଘୁରି ବୁଲୁଥିବା ପରିଲକ୍ଷିତ ହୋଇଥିଲା । ତାହା ସମସ୍ୟାକୁ ସାମଗ୍ରୀକ ଭାବେ ମୁକାବିଲା କରିବାର ସାମର୍ଥ୍ୟକୁ ଯେପରି ହୀନ ବଳ କରିପକାଉଥିଲା । ଏହି ପ୍ରସଙ୍ଗରେ ଭାରତର ପୂର୍ବତନ ଭାଇସରାୟ ଓଡ଼ିଶାପ୍ରଦେଶ ଗଠନର ଅନ୍ୟତମ ବିଧାଣୀ ଲର୍ଡ଼ କର୍ଜନଙ୍କର ୧୯୧୨ ସାଲରେ ଲର୍ଡ଼ସଭାରେ ତାଙ୍କର ପ୍ରଦତ୍ତ ଉକ୍ତି ବରାବର ସ୍ମରଣରେ ଆସେ । 'ଓଡ଼ିଶାର ଅଧିବାସୀମାନେ ଆନ୍ଦୋଳନ ପ୍ରବଣ ହୋଇନଥିବାରୁ, ଦେଶର ସ୍ୱାର୍ଥ କେନ୍ଦ୍ର ସରକାରଙ୍କ ଯୂପ କାଠିରେ ବରାବର ବଳି ପଡ଼ିଆସିଛି ।' ଏହି ଉକ୍ତି ଅସ୍ୱାଭାବିକ ଭାବେ ବିହାର ସହିତ ଓଡ଼ିଶା ମିଶ୍ରଣ ସମ୍ପର୍କରେ ସେ କହିଥିଲେ । ଏହି ପ୍ରସଙ୍ଗରେ ସେ ମଧ୍ୟ କହିଥିଲେ 'ବିହାରର ଛୋଟନାଗପୁର ଡିଭିଜନର ମଧ୍ୟ ସ୍ୱତନ୍ତ୍ର ସମସ୍ୟା ରହିଛି । ଯାହାର ପ୍ରଶ୍ନ ମୁଁ ବର୍ତ୍ତମାନ ଉଠାଉ ନାହିଁ ।

ହଁ, ଆଜି ତାହାର ଅଶୀବର୍ଷ ପରେ ସେହି ବିହାର ଛୋଟନାଗପୁର ଅଞ୍ଚଳର ଯାହା ଆଦିବାସୀ ବହୁଳ ଓ ମୁଖ୍ୟ ବିହାରଠାରୁ ସଂସ୍କୃତିରେ ସମ୍ପୂର୍ଣ୍ଣ ବିଚ୍ଛିନ୍ନ, ବର୍ତ୍ତମାନ ବନାଞ୍ଚଳ ଓ ଝାଡ଼ଖଣ୍ଡ ରୂପେ ତା'ର ମଥା ଉନ୍ନତ କରି ଛିଡ଼ା ହୋଇଛି । ତାହାରି ମଧ୍ୟରେ ଅତ୍ୟନ୍ତ ଅବିଶ୍ୱସନୀୟ ଭାବେ ଛନ୍ଦିହୋଇ



ଯାଇଛି ଓଡ଼ିଆ ଭାଷା ବହୁଳ ଅଞ୍ଚଳ ସିଂହଭୂମି, ଯାହାର ଏକ ଅଂଶରେ ରହିଛି ନିରିମାଖ ରୂପେ ପ୍ରବଞ୍ଚିତ ଓ ବିଡ଼ମ୍ବିତ ଅଞ୍ଚଳ ଷଢ଼େଇକଳା ଆଉ ଖରସୁଆଁ ।

ଷଢ଼େଇକଳା ଓ ଖରସୁଆଁରେ ଓଡ଼ିଆ ଏକ ସର୍ବବୃହତ ଗୋଷ୍ଠୀ ଆଉ ଏହାଙ୍କ ଛଡ଼ା, ଆଦିବାସୀ ସମ୍ପ୍ରଦାୟର ଏହା ଗୋଷ୍ଠୀ, ଯେଉଁମାନଙ୍କୁ ଷଢ଼େଇକଳା ଓ ଖରସୁଆଁର ଭାଗ୍ୟ ନିର୍ଣ୍ଣାୟକ ଭୂମିକାରେ ବହୁବାର ଛିଡ଼ା କରାଯାଇଛି, ମୂଳ ପ୍ରଶ୍ନକୁ ବିଭ୍ରାନ୍ତ କରିବା ପାଇଁ । ଓଡ଼ିଆଭାଷୀ ଭୂଖଣ୍ଡ ବଙ୍ଗଳା, ବିହାର, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜ ପ୍ରଦେଶରେ ବିଭାଜିତ ହୋଇ ରହିଥାଏ । ୧୯୦୦ସାଲର ମଧ୍ୟ ଭାଗରେ ନବୀନ ଓଡ଼ିଶାର ଜନକଜାତ ଗୌରବ ମଧୁସୂଦନ ତତ୍କାଳୀନ ବଡ଼ଲାଟ ଲର୍ଡ଼ କର୍ଜନଙ୍କୁ ସିମଳା ଠାରେ ଅତ୍ୟନ୍ତ ଭାବ ବିହ୍ୱଳିତ କଣ୍ଠରେ ମର୍ମସ୍ପର୍ଶୀ ଭାଷାରେ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ସମ୍ପର୍କରେ ଦାବି ଉପସ୍ଥାପନ ସହିତ, ଓଡ଼ିଶାର ମନ୍ଦିର ମାଳିନୀ ନଗରୀ ସମୂହ ପରିଦର୍ଶନ କରିବା ଲାଗି ବିଧିବଦ୍ଧ ନିମନ୍ତ୍ରଣ ଜଣାଇଲେ । ମଧୁବାବୁଙ୍କର ନିମନ୍ତ୍ରଣ ରକ୍ଷା କରି ଲର୍ଡ଼ କର୍ଜନ ୧୯୦୦ ସାଲର ଡିସେମ୍ବର ୧୬ତାରିଖରେ ପୁରୀ ଓ ଭୁବନେଶ୍ୱରର ଅନବଦ୍ୟ ସ୍ଥାପତ୍ୟ ବିମଣ୍ଡିତ, ଅପୂର୍ବ କଳା ଭାସ୍କର୍ଯ୍ୟ ସମ୍ବଳିତ ମନ୍ଦିରମାନ ପରିଦର୍ଶନ କରିବା ପରେ, ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ଲାଗି ପ୍ରତିଶ୍ରୁତିବଦ୍ଧ ହେଲେ । ଏହି ପରିକଳ୍ପନାକୁ ଆଧାର କରି ୧୯୦୩ସାଲ ଡିସେମ୍ବର ୩ତାରିଖରେ ରିସଲେ ସର୍କୁଲାର ପ୍ରକାଶନ ମାଧ୍ୟମରେ, ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ଲାଗି ସ୍ୱୀକୃତି ପ୍ରଦାନ କରିବା ସହିତ, ବିହାର ଓ ବଙ୍ଗଳା ପରିସରର ଆବଶ୍ୟକୀୟ ସମ୍ଭାବ୍ୟ ପୁନର୍ବିନ୍ୟାସର ଯୋଜନା ମଧ୍ୟ ସମ୍ବଳିତ କରିଥିଲେ ।

ଏହାକୁ ଆଂଶିକ ଭାବେ ସଂଯୋଜିତ କରିବାକୁ ଯାଇ ଲର୍ଡ଼ କର୍ଜନ ୧୯୦୫ସାଲ ଡିସେମ୍ବର ୧୬ତାରିଖରେ ମଧ୍ୟପ୍ରଦେଶର ଛତିଶଗଡ଼ ଡିଭିଜନ୍‌ରୁ ସମ୍ବଲପୁର ଜିଲ୍ଲା ଓ କଳାହାଣ୍ଡି, ପାଟଣା, ସୋନପୁର, ରେଢ଼ାଖୋଲ ଓ ବାମଣ୍ଡା ଗଡ଼ଜାତ ଓ ଛୋଟ ନାଗପୁର ଡିଭିଜନ ବିହାରର ଗାଙ୍ଗପୁର ଓ ବଣେଇ ଗଡ଼ଜାତ ଆଣି ଓଡ଼ିଶା ଡିଭିଜନ ସହିତ ମିଶାଇଥିଲେ । ଏହି ରିସଲେ ସର୍କୁଲାରକୁ ଆଧାର କରି ବିହାରର ଛୋଟନାଗପୁର ଡିଭିଜନକୁ ସରଗୁହା ଗଡ଼ଜାତମଣ୍ଡଳୀର ଭିନ୍ନ ଭାଷୀ ପାଞ୍ଚଟି ଗଡ଼ଜାତ ଯେପରିକି ସରଗୁଜା, ଉଦୟପୁର, ନାଶପୁର, କୋରିଆ ଓ ଚନ୍ଦଭକର, ଗଡ଼ଜାତ ଯାଇ ମଧ୍ୟପ୍ରଦେଶର ଛତିଶଗଡ଼ ଡିଭିଜନରେ ସାମିଲ ହେଲା । ଏହାପରେ ଛୋଟ ନାଗପୁର ବିହାରରେ ବଳକା ଗଡ଼ଜାତ ଦୁଇଟି ମାତ୍ର, ଷଢ଼େଇକଳା ଓ ଖରସୁଆଁ ଦୃଷ୍ଟିର ଅନ୍ତରାଳରୁ ରହି ଯାଇଥିଲା, ଯାହା ଓଡ଼ିଶା ଡିଭିଜନ ସହିତ ସଂଶ୍ଳିଷ୍ଟ ହେବାର ଥିଲା ।

ଏହି ପରିପ୍ରେକ୍ଷୀରେ ଆଲୋଚନା କଲେ ଜଣାଯାଏ ଯେ ବହୁକାଳରୁ ଗଡ଼ଜାତ ପରମ୍ପରା ଥିଲା ଓଡ଼ିଶାର ନିଜସ୍ୱ ପରମ୍ପରା । ଅନଙ୍ଗଭୀମ ଦେବଙ୍କର ସମୟରୁ ଓ ପରବର୍ତ୍ତୀ କାଳରେ ଓଡ଼ିଶାର ମଧ୍ୟ ଓ ପଶ୍ଚିମ ଅଞ୍ଚଳ, ଗଜପତି ରାଜାଙ୍କ ସହିତ ବଶ୍ୟତା ସ୍ୱୀକାର କରୁଥିବା ସାମନ୍ତ ରାଜାଙ୍କ ଦ୍ୱାରା ପରିଚାଳିତ ହେଉଥିଲା । କପିଳେନ୍ଦ୍ର ଦେବଙ୍କର ପୁତ୍ର ମଧ୍ୟ ଏହି ଗଡ଼ଜାତରେ ସାମନ୍ତ ରାଜା ରୂପେ ଶାସନ କରୁଥିଲେ ।

ସେ ଯାହାହେଉ ପରବର୍ତ୍ତୀ ମୁସଲମାନ ଓ ମୋଗଲ ଶାସନ କାଳରେ ଗଡ଼ଜାତମାନେ ମଧ୍ୟ





ସେମାନଙ୍କର ସ୍ୱତନ୍ତ୍ରତା ବଜାୟ ରଖିଥିଲେ ଓ ମରହଟ୍ଟାମାନେ ଚୌଥ କର ଆଦାୟ କରୁଥିଲେ । ବିଭିନ୍ନ ସମୟରେ ୧୮୦୩ସାଲରୁ ଉତ୍ତର ଓଡ଼ିଶା ଓ ପଶ୍ଚିମ ଓଡ଼ିଶା ଇଂରେଜମାନଙ୍କ କର୍ତ୍ତୃତ୍ୱକୁ ଆସିଥିଲା । ସମୟର ଚଢ଼ା ଉତରା ମଧ୍ୟରେ ୧୮୬୦ବେଳକୁ ଇଂରେଜ ଶାସନର ବଶ୍ୟତା ସ୍ୱୀକାର କରି କିଛି ପରିମାଣରେ କର ଦାଖଲ କରି ବଙ୍ଗ ପ୍ରଦେଶ ଅଧୀନରେ ଓଡ଼ିଶା ଡିଭିଜନରେ ବର୍ତ୍ତମାନର ସୂଚିତ ୨୬ଟି ଗଡ଼ଜାତ ରହିଥିଲା । ମାତ୍ର ପରିତାପର ବିଷୟ ୧୮୬୩ସାଲରେ ପାଟଣା, କଳାହାଣ୍ଡି, ସୋନପୁର, ବାମଣ୍ଡା ଓ ରେଢ଼ାଖୋଲ, ମଧ୍ୟପ୍ରଦେଶ, ଛତିଶଗଡ଼ ଡିଭିଜନରେ ମିଶିଲା । ଏହାଛଡ଼ା ପୂର୍ବରୁ ଏହି ମଧ୍ୟପ୍ରଦେଶରେ ୧୪ଗୋଟି ଗଡ଼ଜାତ ଥିଲା । ସେହି ୧୮୬୩ ସାଲରେ ଗାଙ୍ଗପୁର ଓ ବଣେଇ ଏବଂ ଷଢ଼େଇକଳା ଓ ଖରସୁଆଁ ବଙ୍ଗପ୍ରଦେଶର ଛୋଟନାଗପୁର ଡିଭିଜନରେ ମିଶିଲା ।

୧୯୦୫ରେ ଗଡ଼ଜାତମାନଙ୍କର ପୁନର୍ବିନ୍ୟାସ ପରେ କେବଳ ମାତ୍ର ଷଢ଼େଇକଳା ଓ ଖରସୁଆଁ ଦୁଇଟି ରାଜ୍ୟ ଛୋଟନାଗପୁର ଡିଭିଜନ ମଧ୍ୟରେ ରହିଥିଲା, ଯାହା ଓଡ଼ିଆଭାଷୀ ଥିଲା । ପରେ ରାଜ୍ୟବାସୀଙ୍କର ଦାବି ଉପସ୍ଥାପନା ଫଳରେ ୧୯୧୬ରେ ଷଢ଼େଇକଳା ଓ ଖରସୁଆଁ ଗଡ଼ଜାତକୁ ଓଡ଼ିଶା ସହିତ ମିଶ୍ରଣ ଲାଗି ଆଦେଶ ବାହାରି ଥିଲେ ମଧ୍ୟ କାର୍ଯ୍ୟକାରୀ ହୋଇପାରିନଥିଲା ।

ଏହାପରେ ୧୯୧୯ବେଳକୁ ପଣ୍ଡିତ ଗୋଦାବରୀଶ ମିଶ୍ର ଚକ୍ରଧରପୁରରେ ଓଡ଼ିଆ ହାଇସ୍କୁଲ ଖୋଲି ଓଡ଼ିଆ ସଂସ୍କୃତିର ସଂରକ୍ଷଣ ଲାଗି ପ୍ରଚେଷ୍ଟା କଲେ ଓ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ମାର୍ଗଦର୍ଶନ ଦେଇ ଏଥିରେ ସହାୟତା କରିଥିଲେ । ୧୯୨୦ରେ ଉତ୍କଳ ସମ୍ମିଳନୀର ବିଲୟ ପରେ ଉତ୍କଳ କଂଗ୍ରେସ ପକ୍ଷରୁ ସିଂହଭୂମି ଓ ଷଢ଼େଇକଳାର ମିଶ୍ରଣ ଲାଗି ପ୍ରଚେଷ୍ଟା କରାଗଲା । ଏହି ଉଦ୍ୟମରେ ଆନ୍ତରିକତା ଥିବା ସତ୍ତ୍ୱେ ଏହା ଉଭୟ ବିହାର କଂଗ୍ରେସର ନେତୃବର୍ଗ ତଥା ବ୍ରିଟିଶ ଶାସକଙ୍କର ଚକ୍ଷୁଶୂଳ ହୋଇଥିଲା ଏବଂ ଚକ୍ରାନ୍ତ ମଧ୍ୟରେ ଚକ୍ରଧରପୁର ହାଇସ୍କୁଲକୁ ବନ୍ଦ କରିଦିଆଗଲା ।

ଓଡ଼ିଶାର ଅନ୍ୟ ସମସ୍ତ ଅଞ୍ଚଳର ମିଶ୍ରଣ ପରି, ଷଢ଼େଇକଳା ଖରସୁଆଁର ଓଡ଼ିଶା ଡିଭିଜନ ସହିତ ମିଶ୍ରଣ ଜାତୀୟ ଗୌରବ ମଧୁସୂଦନଙ୍କ ଯୋଗୁଁ ସମ୍ଭବ ହୋଇଥିଲା ।

ଭାରତରେ ଶାସନ ବିଧିରେ ସଂସ୍କାର ଆଣିବା ପାଇଁ ବ୍ରିଟିଶ ସରକାର ୧୯୨୭ରେ ସାଇମନ କମିଶନ ଏବଂ ଦେଶୀୟ ରାଜ୍ୟ ତଥା ଗଡ଼ଜାତମାନଙ୍କୁ ଶାସନ ପ୍ରକ୍ରିୟାରେ ସମ୍ପର୍କିତ କରି ଏକ ଫେଡ଼େରାଲ (Federal) ରାଜ୍ୟ ଗଠନ କରିବା ଲାଗି ୧୯୨୮ସାଲରେ ବଟଲାର (Butler) କମିଟି ବସାଇଥିଲେ ।

ସାରା ଭାରତ ସାଇମନ କମିଶନକୁ ବିରୋଧ କରୁଥିବାବେଳେ, ଜାତିପ୍ରାଣ ମଧୁସୂଦନ ଦାସ, ବ୍ରଜସୁନ୍ଦର ଦାସଙ୍କର ନେତୃତ୍ୱରେ ଏକ ପ୍ରତିନିଧି ଦଳ ପଠାଇ, ୧୯୨୮ସାଲ ଡିସେମ୍ବର ୨୨ତାରିଖରେ ପାଟଣା ଷ୍ଟେସନଠାରୁ ସ୍ୱାଗତ ଜଣାଇ ଓ ୨୪ତାରିଖରେ କମିଶନ ସମକ୍ଷରେ ସାକ୍ଷ୍ୟ ପ୍ରଦାନ ପରେ, ସେହି ସାଇମନ କମିଶନଙ୍କର ସୁପାରିଶକ୍ରମେ ଓଡ଼ିଶା ପ୍ରଦେଶ ଗଠନ ସମ୍ଭବପର ହୋଇପାରିଥିଲା ।

ସେହିପରି ୧୯୨୮ସାଲ ଏପ୍ରିଲ ୧୫ତାରିଖରେ ମଧୁସୂଦନ ଦାସ ଓଡ଼ିଶାର ଗଡ଼ଜାତ

ରାଜାମାନଙ୍କ ପକ୍ଷରୁ ବମ୍ବେଠାରେ ବଟଲାର କମିଟି ନିକଟରେ ସାକ୍ଷ୍ୟ ପ୍ରଦାନ ବେଳେ, ଷଢ଼େଇକଳା ଓ ଖରସୁଆଁ ରାଜ୍ୟକୁ ଓଡ଼ିଶା ଡିଭିଜନ ସହିତ ମିଶ୍ରଣ ଲାଗି ଦାବି ଉପସ୍ଥାପିତ କରିଥିଲେ । ଯାହାକୁ ବାଟଲାର କମିଟି ସ୍ୱୀକୃତି ପ୍ରଦାନ କରି, ଓଡ଼ିଶା ଡିଭିଜନ ମଧ୍ୟରେ ଷଢ଼େଇକଳା ଓ ଖରସୁଆଁକୁ ଅନ୍ତର୍ଭୁକ୍ତ କରି ତାଙ୍କର ପ୍ରସ୍ତାବମାନ ଉପସ୍ଥାପିତ କରିଥିଲେ । ବଟଲାର କମିଟି ରିପୋର୍ଟ ପ୍ରକାଶ ପାଇବା ପରେ ସରକାର ଓଡ଼ିଶାରେ ଏହି ଗଡ଼ଜାତ ଦ୍ୱୟଙ୍କର ମିଶ୍ରଣ ଲାଗି ସାର୍ ଆର୍ଥର ଲୋଥିଏନ୍‌ଙ୍କ ଦ୍ୱାରା ଏକ ସ୍ୱତନ୍ତ୍ର ଅନୁସନ୍ଧାନ କରାଇ, ତାଙ୍କର ପ୍ରଦତ୍ତ ରିପୋର୍ଟ ଉପରେ ଭିତ୍ତିକରି ଭାରତ ସରକାର ୧୯୩୧ସାଲରେ ପୁନରାୟ ଷଢ଼େଇକଳା ଓ ଖରସୁଆଁ ମିଶ୍ରଣ ଡିଭିଜନ ସହିତ କରିବା ପାଇଁ ନିର୍ଦ୍ଦେଶନାମା ଜାରି କରିଥିଲେ ।

ଏହାପରେ ଷଢ଼େଇକଳା ଖରସୁଆଁର ମିଶ୍ରଣ ହୋଇଥିଲା, ଯାହା ୧୯୩୫ସାଲର ଭାରତ ଆଇନ ମଧ୍ୟରେ ପୂର୍ଣ୍ଣ ସାମ୍ବିଧାନିକ ମାନ୍ୟତାପ୍ରାପ୍ତ ହୋଇଥିଲା ।

ଏହି ମିଶ୍ରଣ ପଶ୍ଚାତରେ ମଧୁସୂଦନ ଦାସଙ୍କର ଐକାନ୍ତିକ ପ୍ରଚେଷ୍ଟା ନିହିତ । ପରବର୍ତ୍ତୀ ଘଟଣା ପ୍ରବାହ ଏହିପରି ଥିଲା । ୧୯୪୭ ଡିସେମ୍ବର ୧୪ତାରିଖରେ ଷଢ଼େଇକଳା ଖରସୁଆଁ ରାଜା ଦ୍ୱୟ ସେମାନଙ୍କର ଗଡ଼ଜାତକୁ ଓଡ଼ିଶା ରାଜ୍ୟ ଶାସନ ସହିତ ଅଙ୍ଗୀଭୁକ୍ତ କରିବା ପାଇଁ ସ୍ୱୀକୃତି ପ୍ରଦାନ କରି ଦସ୍ତଖତ କରିଥିଲେ । ଭାରତ ସରକାରଙ୍କ ୧.୧.୧୯୪୮ର ନିର୍ଦ୍ଦେଶନାମା ଅନୁସାରେ ଷଢ଼େଇକଳା, ଖରସୁଆଁ ଗଡ଼ଜାତ ଦ୍ୱୟ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ହେଲା । ମୟୂରଭଞ୍ଜ ଗଡ଼ଜାତ ମିଶିନଥିବାରୁ ଓଡ଼ିଶା ସହିତ ସଂଯୁକ୍ତିର ଅଭାବ ଦର୍ଶାଇ ୧୮.୫.୧୯୪୮ଦିନ ଏହାକୁ ବିହାର ପ୍ରଦେଶ ସହିତ ମିଶାଇ ଦିଆଗଲା । ମାତ୍ର ଏହାର କିଛି କାଳ ପରେ ୧.୧.୧୯୪୯ରେ ମୟୂରଭଞ୍ଜ ରାଜ୍ୟର ଓଡ଼ିଶାରେ ମିଶ୍ରଣ ହେବାପରେ ମଧ୍ୟ ୧.୮.୧୯୪୯ରେ ଏହି ଷଢ଼େଇକଳା ଓ ଖରସୁଆଁ ଅଞ୍ଚଳ ଦ୍ୱୟକୁ ଆଇନସଙ୍ଗତ ଭାବେ ବିହାର ସହିତ ମିଶାଇ ଦିଆଗଲା । ୧୯୫୩ସାଲର ଡିସେମ୍ବର ମାସରେ ରାଜ୍ୟ ପୁନର୍ଗଠନ କମିଶନ ନିଯୁକ୍ତି ହେଲା । ଷଢ଼େଇକଳା, ଖରସୁଆଁର ମିଶ୍ରଣ ଲାଗି ସର୍ବଦଳୀୟ ଦାବି ଉପସ୍ଥାପନା ପରେ ମଧ୍ୟ ୧୦.୧୦.୧୯୫୫ରେ ପ୍ରକାଶିତ ରିପୋର୍ଟରେ ରାଜ୍ୟ ପୁନର୍ଗଠନ କମିଶନ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲେ । ପରିଣାମରେ ଏକ ବିପୁଳ ଉଦ୍ଦୀପନାର ସହ ଜନଆନ୍ଦୋଳନ ଗଢ଼ିଉଠିଲା, ହେଲେ କେନ୍ଦ୍ର ସରକାରଙ୍କର ଯୂପକାଠିରେ ଓଡ଼ିଶାର ସ୍ୱାର୍ଥ ବଳିପଡ଼ିଲା ।

କେନ୍ଦ୍ର ସରକାରଙ୍କର ୧୯୯୬ରେ ବନାଞ୍ଚଳ ଗଠନ ପ୍ରସ୍ତାବ ଆସିଲା ଓ ଏହାକୁ ଆଧାର କରି ୧.୫.୨୦୦୮ରେ ବିହାର ବିଧାନସଭାରେ ଝାଡ଼ଖଣ୍ଡ ରାଜ୍ୟ ସୃଷ୍ଟି କରିବା ଲାଗି 'ବିହାର ପୁନର୍ଗଠନ ବିଲ୍ -୨୦୦୦' ପାସ୍ ହୋଇ ପାର୍ଲାମେଣ୍ଟରେ ଉପସ୍ଥାପନା ପାଇଁ ପଠାଗଲା । ଏହି ପରିପ୍ରେକ୍ଷୀରେ ଷଢ଼େଇକଳା ଖରସୁଆଁର ଓଡ଼ିଶାରେ ପୁନଃମିଶ୍ରଣ ଲାଗି ଏକ ସୁଯୋଗ ସୃଷ୍ଟି ହେଲା । ସବୁ ରାଜନୈତିକ ଦଳମାନଙ୍କ ମଧ୍ୟରେ ସହମତି ପ୍ରକାଶ ପାଇଲା ଓ ୧୦.୭.୨୦୦୦ରେ ସବୁ ଦଳମାନଙ୍କ ପକ୍ଷରୁ ଓଡ଼ିଶା ବିଧାନସଭାରେ ଷଢ଼େଇକଳା ଓ ଖରସୁଆଁ ଓଡ଼ିଶାରେ ମିଶ୍ରଣ ଲାଗି ପ୍ରସ୍ତାବ ଗୃହୀତ ହେଲା । କେନ୍ଦ୍ର ସରକାରଙ୍କର କିଛି ନେତୃବର୍ଗଙ୍କ ଠାରୁ ଆଶାଜନକ ପ୍ରତିଶ୍ରୁତି ମିଳିବା ପରେ ମଧ୍ୟ ବିଡ଼ମ୍ବିତ ଭାବରେ ଷଢ଼େଇକଳା ଓ ଖରସୁଆଁ ସମ୍ପର୍କରେ କୌଣସି ସୂଚନା ନଥାଇ ଅକସ୍ମାତ ପାର୍ଲାମେଣ୍ଟରେ





ଝାଡ଼ଖଣ୍ଡ ରାଜ୍ୟ ଗଠନ ବିଲ୍ ଗୃହମନ୍ତ୍ରୀ ଶ୍ରୀ ଲାଲକୃଷ୍ଣ ଆଡ଼ଭାନୀ ଉପସ୍ଥାପିତ କରିଥିଲେ । କେନ୍ଦ୍ର ସରକାର, କେନ୍ଦ୍ର ଶାସନ ତଥା ବିଭିନ୍ନ ହାଇକମାଣ୍ଡଙ୍କ ଦ୍ୱାରା ପ୍ରବଞ୍ଚିତ ହେବା ଓଡ଼ିଶାର ଭାଗ୍ୟ ଲିଖନ । ଏଥିପାଇଁ ଆବଶ୍ୟକତା ରହିଛି ଏକ ବଳିଷ୍ଠ, ପୁରୋଦୃଷ୍ଟି ସମ୍ପନ୍ନ ସମର୍ପିତ ନେତୃତ୍ୱ ।

(ମଣିଷର ବାର୍ତ୍ତାବହ ସ୍ୱାଭିମାନ, ୨୦୦୪)





# ଅଗୃହୀ ଓ ଗୃହୀ

ନୀଳ ଆକାଶର ବୁକୁରେ ଲାଖି ରହିଛି ନିଘଞ୍ଚ ବଣରେ ଢାଙ୍କିହୋଇ ପାହାଡ଼ର ମାଳାଟି । ପବନର ଦୋଳିରେ ଝୁଲୁଥିବା ଏହି ପାହାଡ଼ମାଳର କୋଣରେ ସଂକୀର୍ଣ୍ଣ ଉପତ୍ୟକାଟି ମେଲିଯାଇଛି ଦୂର ଦିଗନ୍ତ ଯାଏଁ । ତା'ରି ଭିତରେ ଛଳଛଳ ହୋଇ ବହିଯାଇଛି 'ମହୀ' ନଦୀଟି ଉଚ୍ଛଳା ହୋଇ । ନଦୀର ଦୁଇଆଡ଼ିରେ ଲମ୍ବିଯାଇଛି, ବହଳ ଘାସର ପଡ଼ିଆ ସବୁ ଦୂର ପାହାଡ଼ ତଳଯାଏଁ ।

ସେହି ଘାସର ପଡ଼ିଆ ଭିତରେ ଛିଡ଼ାହୋଇଛି ଧର୍ମକୌଣ୍ଡିନ୍ୟ ନଗରୀର ଶ୍ରେଷ୍ଠୀ ଧନୀୟ ଗୋପର ଘର । ସାହାଲାକୁ ସାହଲା ଘର ଭିତରେ ପାଳିତ ହେଉଛନ୍ତି ଅସଂଖ୍ୟ ଦୁଧିଆଳୀ ଗାଈ ଆଉ ବାଛୁରୀ ।

ବର୍ଷାଦିନର ସମୟ । ବର୍ଷାଋତୁ ଅଧା ହେଲାଣି । ଏପର୍ଯ୍ୟନ୍ତ ବର୍ଷାର ଚିହ୍ନ ନାହିଁ । ଆକାଶରେ ସୂର୍ଯ୍ୟଟି ଡହକୁଛି ରଡ଼ନିଆଁ ଭର୍ତ୍ତି ହୋଇଥିବା ଚୁଲୀଟି ପରି । ଆଉ ଅଜାଡ଼ି ଦେଉଛି ଜଳନ୍ତା ଅଙ୍ଗାର ପରି ତାତିଲା କିରଣ ।

ଧନୀୟ ଗୋପ କରିଛି ପୂଜାର ଆୟୋଜନ, ବର୍ଷା ହେବାପାଇଁ ।

ଉପରବେଳାର ସମୟ । ହଠାତ୍ ଭଗବାନ ବୁଦ୍ଧ ଆସି ପହଞ୍ଚିଗଲେ ଧନୀୟ ଗୋପର ଘର ସାମ୍ନାରେ । ସେହି ଘର ଆଗରେ ଖୋଲା ପଡ଼ିଆରେ ଛାଉଣୀ ନଥିବା ଭଙ୍ଗା ଘରଟିରେ ଭଗବାନ ଆଶ୍ରୟ ନେଇଛନ୍ତି । ସେହି ପଡ଼ିଆକୁ ଲାଗିଥିବା ଘାସରେ ଆଚ୍ଛାଦିତ ଆଡ଼ିଟି ଲମ୍ବିଯାଇଚି ନଦୀର ଧାରଯାଏଁ । ଦୂରରୁ ଭାସିଆସୁଛି ନଈଧାରର କଳକଳ ସ୍ୱର । ଦିନଟି ସାରା ତାତିଲା ଧଳିଚିଆ ପବନ ବହିଚାଲିଛି । ସେହି ଝାଞ୍ଜି ପବନରେ ଝାଳନାଳ ହୋଇ ସଭିଏଁ ବ୍ୟସ୍ତ ହୋଇଯାଇଛନ୍ତି ।

ଧନୀୟ ଗୋପ ପୂଜା ବାଡ଼ିସାରିଥିଲା, ଦେବତାଙ୍କର ଉଦ୍ଦେଶ୍ୟରେ । ସେ ଦେବତାଙ୍କୁ ନିବେଦନ କରିଥିଲା ବର୍ଷା ପାଇଁ । ଏହି ସମୟରେ ଭଗବାନ ବୁଦ୍ଧ ଆସି ସେଠାରେ ପହଞ୍ଚିଗଲେ । ଧନୀୟ ଗୋପ ଭଗବାନଙ୍କର ଚରଣ ପ୍ରାନ୍ତରେ ପ୍ରଣିପାତ କଲା ଏବଂ ଶ୍ରଦ୍ଧା ନିବେଦନ କରି ତାହାଙ୍କୁ ଘର ଭିତରକୁ ପାଛୋଟି ନେଲା ।

ଭଗବାନ ତା'ର କୁଶଳ ସମାଚାର ପୁଚ୍ଛା କଲେ । ଏହାର ଉତ୍ତରରେ ନିଜର ପରିଚୟ ପ୍ରଦାନ କରିଛି ଧନୀୟ ଗୋପ । ତା'ସହିତ ବୃଷ୍ଟି ଦେବତାଙ୍କୁ ଆବେଦନ କରିଛି ବର୍ଷା ଲାଗି ।

'ହେ ଶ୍ରମଣ ! ମୁଁ ସମସ୍ତ ପରିଜନ ସହ ଏହି ମହାନଦୀର ତଟରେ ବାସ କରୁଛି । ଗାଈ ସବୁ ଦୁହାଁ ସରିଛନ୍ତି । ରୋଷେଇଘର ଚୁଲିରେ ଭାତ ରନ୍ଧା ହେଉଛି । ଘରସବୁ ଭଲ ଭାବରେ ଛାଉଣୀ ହୋଇଛି । ହେ ଦେବ ! ଯଦି ଚାହୁଁଚ, ଖୁବ୍ ଜୋର୍‌ରେ ବର୍ଷା କର' ।

ଏହାର ଉତ୍ତରରେ ଭଗବାନ କହିଲେ, 'ହେ ଧନୀୟ ! ମୁଁ କ୍ରୋଧରୁ ମୁକ୍ତ ହୋଇଛି । ମୋର ଚିତ୍ତରୁ ସମସ୍ତ ଆବିଳତା ଦୂର ହୋଇଯାଇଛି । ମୋ ଭିତରେ ଥିବା ସମସ୍ତ ଅଗ୍ନି ଶାନ୍ତ ହୋଇ ଲିଭିଯାଇଛି । ମହାନଦୀ ତୀରରେ, ଏହି ପଡ଼ିଆରେ ଆଜି ରାତିଟି କେବଳ ବିତାଇବି, ହଁ, ମୁଁ ରହିଥିବା ଘରର ଛାତଟି ଛାଉଣୀ ନହୋଇ ଖୋଲା ରହିଛି । ହେ ଦେବ । ଯଦି ଚାହଁ ଖୁବ୍ ବର୍ଷା କର ।'

'ହେ ଶ୍ରମଣ । ଏହି ନଦୀର ଆଡ଼ିରେ ଆଉ ଗର୍ଭରେ ବଢ଼ିଥିବା ଲମ୍ବା ଘାସ ସବୁକୁ ଗାଈମାନେ ଆରାମରେ ଚରୁଛନ୍ତି । ବର୍ଷାର ତୋଡ଼ ଆଉ ବନ୍ୟାର ବିପ୍ରାତ ସେମାନେ ସହଜରେ ସହିଯିବେ । ହେ ଦେବ ! ଯଦି ଚାହଁ ଖୁବ୍ ବର୍ଷା କର,' ଧନୀୟ ଗୋପ କହିଲା ।

'ହେ ଧନୀୟ । ମୁଁ ସଂସାରର ବନ୍ୟାକୁ ପହଁରି ପାର ହୋଇସାରିଛି । ଆଉ କୌଣସି ନୌକାର ଆବଶ୍ୟକତା ନାହିଁ । ହେ ଦେବ । ଯଦି ଚାହଁ ଖୁବ୍ କର', ଭଗବାନ ବୁଦ୍ଧ ଉତ୍ତର ଦେଲେ ।

'ହେ ଶ୍ରମଣ । ମୋର ସ୍ତ୍ରୀ (ଗଉଡୁଣୀ) ଆଜ୍ଞାକାରିଣୀ । ସେ ମୋର ପ୍ରେମ ଓ ଶ୍ରଦ୍ଧାରେ ବଶୀଭୂତ । ସେ କୌଣସି ପାପକାର୍ଯ୍ୟ କରିଥିବା କଥା ମୁଁ ଶୁଣିନାହିଁ । ହେ ଦେବ । ଯଦି ଚାହଁ ଖୁବ୍ ବର୍ଷା କର,' ଧନୀୟ ଗୋପ କହିଲା ।

'ହେ ଧନୀୟ । ମୋର ଚିତ୍ତ ବଶୀଭୂତ ଆଉ ବିମୁକ୍ତ । ଦୀର୍ଘଦିନ ଧରି ମୋର ମନ ଶୃଙ୍ଖଳିତ ଆଉ ସଂଯତ । ମୋ ଭିତରେ କୌଣସି ପାପ ନାହିଁ । ହେ ଦେବ । ଯଦି ଚାହଁ ଖୁବ୍ ବର୍ଷା କର', ଭଗବାନ ଉତ୍ତର ପ୍ରଦାନ କଲେ ।

ହଠାତ୍ ଦୂର ଦିଗନ୍ତରେ ମେଘମାଳା କାହୁଁ ଆସି ଜମିଗଲା । ଆଉ ମେଘର ଘୋଡ଼ଣୀ ଭିତରେ ପାହାଡ଼ ସବୁ ଲୁଚିଗଲେ । ପବନଟି ଉତ୍ତଳା ହୋଇ ବହିବାକୁ ଲାଗିଲା । ଟିକିଏ ନୀରବ ରହି ଧନୀୟ ଗୋପ ପୁଣି କହିଲା ।

'ହେ ଶ୍ରମଣ । ମୁଁ ନିଜେ କାମ କରି ପରିବାରର ଭରଣପୋଷଣ କରେ । ମୋର ପୁତ୍ରଗଣ ମଧ୍ୟ ପାପକାର୍ଯ୍ୟ କରିଥିବା ମୁଁ ଜାଣେନାହିଁ । ହେ ଦେବ । ଯଦି ଚାହଁ ଖୁବ୍ ବର୍ଷା କର ।'

'ହେ ଧନୀୟ । ମୁଁ କାହାରି କାମରେ ନିଯୁକ୍ତ ନୁହେଁ । ମୁଁ ମଧ୍ୟ କାହାରିଠାରେ ଚାକିରି କରେନାହିଁ । ହେବ ଦେବ । ଯଦି ଚାହଁ ଖୁବ୍ ବର୍ଷା କର,' ଭଗବାନ ଉତ୍ତରରେ କହିଲେ ।

'ହେ ଶ୍ରମଣ । ମୋ ପାଖରେ ବାଛୁରୀ, ଦୁଧିଆଳୀ ଗାଈ, ଛଡ଼ା ଆଉ ଷଣ୍ଢ ଅଛନ୍ତି । ମୁଁ ଗୁହାଳରେ ଟାଣୁଆ ଖୁଣ୍ଟସବୁ ପୋତି ଦେଇଛି । ମଞ୍ଜାଦିଆ ଦମ୍ଭିଲା ପଘାରେ ବାଛୁରୀ ଆଉ ଗାଈ ସବୁକୁ ବାନ୍ଧି ରଖିଛି । ସେମାନେ ପଘା ଛିଣ୍ଡେଇ ଯାଇପାରିବେ ନାହିଁ । ହେ ଦେବ । ଯଦି ଚାହଁ ବର୍ଷା କର ।

ଧନୀୟ ଗୋପ କହିଲା ।

'ହେ ଧନୀୟ । ମୁଁ ବୃଷଭ ପରି ସଂସାରର ବନ୍ଧନକୁ ଛିଣ୍ଡାଇ ଦେଇଛି । ହାତୀମାନେ ଲତା ଗୁଳ୍ମସବୁ ବିଧ୍ୱସ୍ତ କଲାପରି ସମସ୍ତ ସଂସ୍କାର (ରାଗ ଓ ଦ୍ୱେଷର ସଞ୍ଚିତ ବିକାର)କୁ ସମ୍ପୂର୍ଣ୍ଣ ରୂପେ ବିଲୋପ କରିଛି । ମୁଁ ପୁନର୍ବାର ଆଉ ଜନ୍ମଗ୍ରହଣ କରିବି ନାହିଁ । ହେ ଦେବ । ଯଦି ଚାହଁ ଖୁବ୍ ବର୍ଷା କର ।' ଭଗବାନ ମନ୍ଦ୍ରିତ ଧ୍ୱନିରେ କହିଲେ ।

ସେହି ଧ୍ୱନିର ପ୍ରତିଧ୍ୱନି ପରି ସାରା ଆକାଶରେ ବିଛେଇ ହୋଇଗଲା । କଳାମେଘରେ ଘନ ଆସ୍ତରଣ । ପବନ ଉଚ୍ଚାଟ ହୋଇ ବହିବାକୁ ଲାଗିଲା କୁହାଟ ଛାଡ଼ି । ପ୍ରବଳ ଘୂର୍ଣ୍ଣିର ପାହାଚରେ ମେଘସବୁ ଓହ୍ଲାଇ ଆସିଲେ ତଳକୁ ଆଉ ଅଜାଡ଼ି ଦେଇଗଲେ ତୁହାକୁତୁହା ତୁମୁଳ ବର୍ଷା । ପବନ ତୀବ୍ର ବେଗରେ ବହିବାକୁ ଲାଗିଲା ଗୁରୁଗର୍ଜନ କରି ଆଉ ତା'ର ପ୍ରଚଣ୍ଡ ଆଘାତରେ ଧନୀୟ ଗୋପର ସାହାଲାକୁ ସାହାଲା ଲାଗିଥିବା ଘରର ଛାତଟି ଉଜୁଡ଼ିଗଲା । ଧନୀୟ ଗୋପ ଆପଣା ପତ୍ନୀ ସହ ଗୃହହୀନ (ଅଘରୀ) ଆଉ ନିରାଭରଣ ହୋଇ ଖୋଲା ଆକାଶରେ ଛାତ ତଳେ ଛିଡ଼ା ହୋଇ ରହିଲା ।

ବରଷା ଅବିଶ୍ରାନ୍ତ ଗତିରେ ଅଜାଡ଼ି ହୋଇପଡ଼ିଲା । ଆଉ ହଠାତ୍ ଉପରମୁଣ୍ଡରୁ-ନଦୀରେ ବହିଆସିଲା ପ୍ରବଳ ସ୍ରୋତ । ନଦୀ ମଧ୍ୟରେ ବନ୍ୟାର ଘେରରେ ରହିଗଲେ ଧନୀୟ ଗୋପର ପୁତ୍ରସବୁ ଆଉ ଗାଈମାନେ ଅତ୍ୟନ୍ତ ବିପଦସଙ୍କୁଳ ଅବସ୍ଥାରେ ।

ଧନୀୟ ଗୋପ, ତା'ର ପ୍ରାଣକୁ ବଳି ପ୍ରିୟ ପୁତ୍ରଗଣ ତଥା ଗାଈମାନଙ୍କ ଲାଗି ଦୁଃଖରେ ଭାଙ୍ଗିପଡ଼ିଲା । ତା'ର ଆଖିରୁ ବହିଚାଲିଲା ଧାର ଧାର ଲୁହ ।

ଧନୀୟର ମନ ଗଭୀର ଭାବରେ ଆକୁଳିତ । ପ୍ରତିଟି କ୍ଷଣ, ତାହାରି ଲାଗି ଯେପରି ଗୋଟିଏ ଲମ୍ବା ଅଛିଣ୍ଡା ମୁହୂର୍ତ୍ତ । ତା'ର ମନ ଉଦ୍‌ବେଳିତ । ପୁତ୍ରମାନଙ୍କର କୌଣସି ସମ୍ବାଦ ମିଳିବା ସମ୍ଭବପର ହୋଇନାହିଁ ।

ଧୀରେ ବର୍ଷାର ପ୍ରକୋପ କମିଲା । ନଦୀ ସୁଅର ତୋଡ଼ ମଧ୍ୟ ଥମିଗଲା । ଦୂର ଆକାଶରେ ମେଘର ପରଦାଟି ହଟିଗଲା । ବରଷାରେ ହକାଳି ହୋଇ ପାହାଡ଼ମାଳାଟି ଝଟକି ଉଠିଲା ଆକାଶର ଗାଢ଼ ନୀଳିମାର ଆସ୍ତରଣ ଉପରେ ।

କିଛିସମୟ ପରେ ପୁତ୍ରମାନେ ଗାଈମାନଙ୍କ ସହିତ ନିରାପଦରେ ଫେରିଆସିଲେ । ଧନୀୟ ଗୋପ, ଭଗବାନ ବୁଦ୍ଧଙ୍କର ନିକଟରେ ତାହାର ଗଭୀର କୃତଜ୍ଞତା ଜଣାଇଲା ।

ଏତିକିବେଳେ ଭଗବାନଙ୍କର କଣ୍ଠରୁ ଉଚ୍ଚାରିତ ହେଲା ପରମ ଜ୍ଞାନର ବାଣୀ:

'ପୁତ୍ରଥିବା ଲୋକ ପୁତ୍ର ପାଇଁ ଶୋକ କରେ । ଗାଈ ଥିବା ଲୋକ ଗାଈ ପାଇଁ ଶୋକ କରେ । ସଂସାରରେ ଲୋକେ ଉପାଧି ଓ ବିଷୟ ପାଇଁ ଶୋକ କରନ୍ତି । ମାତ୍ର ଯେ ବିଷୟ ରହିତ ହୋଇ ନିରୁପାଧି, ତାହାର ସମସ୍ତ ଶୋକର ଅନ୍ତ ହୋଇଯାଏ ।'

ଭଗବାନଙ୍କଠାରୁ ପ୍ରଜ୍ଞାର ବାଣୀ ଶୁଣି ଧନୀୟ ଗୋପର ଜ୍ଞାନଚକ୍ଷୁ ଖୋଲିଗଲା । ତା'ର ଉଦ୍‌ବେଳିତ ମନ ଶାନ୍ତ ହୋଇଗଲା । ଜଗତର ବାସ୍ତବ ସ୍ୱରୂପଟି ତା' ଆଗରେ ଫୁଟିଉଠିଲା ।





